AHALYA
By Ramachandra Tripathy
Published by Vidyapuri, Cuttack 753 002

ISBN 81-7411-342-8

ପ୍ରଥମ ପ୍ରକାଶ
ଫେବୃୟାରୀ ୨୦୦୩

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ଚିତ୍ରଶିଳ୍ପୀ
ଲକ୍ଷ୍ମୀଧର ଦାସ

ମୁଦ୍ରଣ
ରୟାଲ୍ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୫୦.୦୦

# ନିଜକଥା

ବୈଦିକ ସାହିତ୍ୟଠାରୁ ଆରମ୍ଭକରି ରାମାୟଣ ଓ ଲୋକକଥା ମଧ୍ୟ ଦେଇ ଅହଲ୍ୟା ଆଖ୍ୟାନ ଗଢ଼ିଉଠିଛି । କାଳକ୍ରମେ ଏହି ଆଖ୍ୟାନଭାଗ 'ରୂପକଳ୍ପ' ଭାବେ ମଧ୍ୟ ଉତ୍ତରିତ ହୋଇଛି । ରାମାୟଣ ଓ ମହାଭାରତରେ ପାଞ୍ଚଟି ଅନନ୍ୟ ନାରୀ ଚରିତ୍ର ଶାଶ୍ୱତୀ କନ୍ୟାରୂପେ ପ୍ରାତଃସ୍ମରଣୀୟା । ସେମାନଙ୍କର ପ୍ରତିକୂଳ ସ୍ଥିତିକୁ ବିଚାରକଲେ ପ୍ରତ୍ୟେକ ସହୃଦୟ ବ୍ୟକ୍ତି ସମ୍ବେଦନା ପ୍ରକାଶ କରିବେ । ସତେ ଅବା, ସେହି ସେହି ଚରିତ୍ର ନିଜ ନିଜ ଭାବରେ ନାରୀତ୍ୱର ପ୍ରତୀକାତ୍ମ ବେଦନା । ସେମାନେ କୌଣସିଠାରେ ସ୍ୱେଚ୍ଛାରେ ନାରୀ ମର୍ଯ୍ୟାଦାର ହାନି କରି ନାହାନ୍ତି । ଅନାୟତ୍ତ ଘଟଣାକୁ ହୁଏତ ତପସ୍ୟା ଦୃଷ୍ଟିରେ ସହ୍ୟ କରିନେଇଛନ୍ତି । ସେମାନଙ୍କ ଅନ୍ତର୍ମନରେ ଉତ୍ତରଣର ତପସ୍ୟାଧାରାକୁ ଯଥାର୍ଥ ଦ୍ରଷ୍ଟା ଅନୁଧ୍ୟାନ କରିପାରିବେ । ଘଟଣାଚକ୍ରରେ ପ୍ରତ୍ୟେକ ଏକାଧିକ ପୁରୁଷ ସହିତ ସଂପର୍କିତ ହୋଇ ମଧ୍ୟ ନୀରବସାଧନା ଓ ନିର୍ଲିପ୍ତତାରେ ନାରୀମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିଛନ୍ତି; କୌଣସି ସ୍ଥଳରେ ଅତିକ୍ରମଣ କରିନାହାନ୍ତି । ଲୋକଦୃଷ୍ଟିରେ ଉପଭୁକ୍ତା ହୋଇ ମଧ୍ୟ ଅପେକ୍ଷମାଣା ଶାଶ୍ୱତ କନ୍ୟାଭାବକୁ ହରାଇ ନାହାନ୍ତି । ରୂପସତ୍ତା ଓ ଭାବବୃତ୍ତିରେ ଚିରନ୍ତନୀ କନ୍ୟା, ସତେଅବା ଅନାବିଦ୍ଧ ରତ୍ନ, ଅନାଘ୍ରାତ ପୁଷ୍ପ, ବସନ୍ତମାସର ଅନାସ୍ୱାଦିତରସ ନୂତନମଧୁ; ଶଶ୍ୱତ୍‌ପ୍ରତୀକ୍ଷମାଣା କନ୍ୟାକୁମାରୀ । ପ୍ରାତଃକାଳରେ ସେମାନଙ୍କ ନାମ ସ୍ମରଣ ପାଇଁ ପୂର୍ବସୂରୀମାନେ ନିର୍ଦ୍ଦେଶ ଦେଇଛନ୍ତି

''ଅହଲ୍ୟା ଦ୍ରୌପଦୀ କୁନ୍ତୀ ତାରା ମନ୍ଦୋଦରୀ ତଥା,
ପଞ୍ଚ କନ୍ୟାଃ ସ୍ମରେନ୍ନିତ୍ୟଂ ମହାପାତକନାଶନମ୍'' ।

'ଅହଲ୍ୟା-ଶତକର କିୟଦଂଶ ପଞ୍ଚ-କନ୍ୟା-ପ୍ରସଙ୍ଗିତ ଅହଲ୍ୟାନିବନ୍ଧରେ ବହୁପୂର୍ବେ ପୌରୁଷ ପତ୍ରିକାରେ ପ୍ରକାଶ ପାଇଥିଲା । ଲେଖାଟି ପୌରାଣିକ ଏବଂ କଳ୍ପନାପ୍ରସୂତ ଚିନ୍ତାର ସମାବେଶ । 'ପଞ୍ଚକନ୍ୟା'ଙ୍କ ନାମୋଚ୍ଚାରଣ କଲେ ମହାପାତକରୁ ମୁକ୍ତି ମିଳିଥାଏ, ଏହି ଧାରଣା ଆମ ସମାଜରେ ପ୍ରଚଳିତ । ପୁରାଣବର୍ଣ୍ଣିତ ଯେଉଁ ପାଞ୍ଚଟି ନାରୀଚରିତ୍ର ପଞ୍ଚକନ୍ୟା ମଧ୍ୟରେ ଅନ୍ତର୍ଭୁକ୍ତ, ଅହଲ୍ୟା ସେମାନଙ୍କ ମଧ୍ୟରେ ଅନ୍ୟତମା । ଅହଲ୍ୟା ପ୍ରସଙ୍ଗରେ ମୁଖ୍ୟତଃ ବାଲ୍ମୀକୀୟ ରାମାୟଣକୁ ଆଧାର କରାଯାଇଥିଲେ ମଧ୍ୟ ଅଧ୍ୟାତ୍ମରାମାୟଣ, ଦାଣ୍ଡିରାମାୟଣ, କେତେକ ବିଶିଷ୍ଟ ଆଲୋଚନାମୂଳକ ପ୍ରବନ୍ଧ ଏବଂ ପ୍ରଚଳିତ କିମ୍ବଦନ୍ତୀର ମଧ୍ୟ ଆଶ୍ରୟ ନିଆଯାଇଛି । ଏହି ଲେଖାରେ ନିଜସ୍ୱ କଳ୍ପନା ମଧ୍ୟ ସ୍ଥାନ ପାଇଛି । ଅହଲ୍ୟା-ଆଖ୍ୟାନ ପୌରାଣିକ, ଏପରିକି ବୈଦିକସାହିତ୍ୟରେ ଏହାର ମୂଳ ଉତ୍ସ ଦେଖାଯାଏ । ସମୟକ୍ରମେ

ଏପରି ଏକ ଆଖ୍ୟାନର ଘଟଣାବସ୍ତୁ ହୁଏତ ରୂପକକଳ୍ପଭିତ୍ତିକ ହୋଇଯାଇଛି । ସନ୍ନିହିତ ଭୂମିକାରେ ଏହି ଆଖ୍ୟାନର ବିଭିନ୍ନ ଦିଗ ଓ ରୂପକକଳ୍ପର ଭିତ୍ତିଭୂମି ଆଲୋଚିତ ହୋଇଛି । ପାଠକମାନେ ଲେଖକଙ୍କର ଦୃଷ୍ଟିକୋଣକୁ ଖଣ୍ଡନ ଅଥବା ମଣ୍ଡନ କରିବାପାଇଁ ସଂପୂର୍ଣ୍ଣ ମୁକ୍ତ । ଏହାକୁ ଆଖ୍ୟାୟିକା ଅଥବା କଳ୍ପନାଶ୍ରୟୀ ଅନୁଚିନ୍ତାରୂପେ ମଧ୍ୟ ଗ୍ରହଣ କରିପାରନ୍ତି । କିନ୍ତୁ ଅହଲ୍ୟା ଚରିତ୍ରର ମାନବୀୟ ଦିଗଟି ସହୃଦୟମାନଙ୍କ ସଚେତସ ଭାବ-ବୃତ୍ତିକୁ ସ୍ପର୍ଶ କରିବ, ଆଶା କରୁଛି । ଚରିତ୍ରଟି ଯେତିକି କରୁଣ, ତତୋଽଧିକ ଭାବୋଦ୍ଦୀପକ ।

ପୌରୁଷ ପତ୍ରିକାରେ ପ୍ରକାଶ ପାଇଥିବା ଅହଲ୍ୟା-ପ୍ରବନ୍ଧକୁ ପାଠକରି ସ୍ୱର୍ଗତ ଡକ୍ଟର ସଦାଶିବ ମିଶ୍ର (ପୂର୍ବତନ କୁଳପତି) ଏକ ସାରସ୍ୱତ ମିଳନରେ ଉଚ୍ଚ ପ୍ରଶଂସା କରିଥିଲେ । ଘଟଣାକ୍ରମେ ମୁଁ ତାଙ୍କ ନିକଟରେ ବସିଥାଏ । ଡକ୍ଟର ମିଶ୍ର ମୋତେ ପ୍ରବନ୍ଧର ଲେଖକଭାବେ ଜାଣି ନ ଥାନ୍ତି । ନିକଟରେ ବନ୍ଧୁ ସ୍ୱର୍ଗତ ବିଚିତ୍ରାନନ୍ଦ କର ଓ ଅନ୍ୟମାନେ ଥିଲେ । ମୁଁ ଟିକେ ସଂକୁଚିତ ଅନୁଭବ କରୁଥାଏ । ବିଚିବାବୁ ଟିକେ ଟିକେ ହସୁଥାନ୍ତି । ଶେଷରେ ବିଚିବାବୁ କହିଲେ, ''ସାର୍‌, ତ୍ରିପାଠୀବାବୁ ଆପଣଙ୍କ ନିକଟରେ ବସିଛନ୍ତି ।'' ମୁଁ ନମସ୍କାର ଜଣାଇଲି । ଡକ୍ଟର ମିଶ୍ର ମୋତେ ଚାହିଁ କହିଲେ, ''ମୁଁ ଆପଣଙ୍କୁ ଅଧ୍ୟାପକ ଭାବରେ ଜାଣିଛି; ନାଁଟି ଭୁଲି ଯାଇଥିଲି । ଅହଲ୍ୟା ପ୍ରବନ୍ଧଟି ପ୍ରକୃତରେ ଭଲ ଲାଗିଲା ।'' ତାଙ୍କ ସଦୃଶ ବିଦ୍ୱାନ୍ ଓ ସମାଲୋଚକଙ୍କ ମତାମତ ମତେ ଉତ୍ସାହ ଦେଲା । ଭାବିଥିଲି, 'ଅହଲ୍ୟାଶତକ' ପ୍ରକାଶ ହେଲେ ତାଙ୍କରି ହସ୍ତରେ ଅର୍ପଣ କରିବି । ଡକ୍ଟର ମିଶ୍ର ଆଜି ନାହାନ୍ତି । ତାଙ୍କର ସାରସ୍ୱତପ୍ରତିଭା ପ୍ରତି ସମ୍ମାନ ଜଣାଇ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ 'ଅହଲ୍ୟାଶତକ' ପୁସ୍ତିକାଟି ଅର୍ପଣ କରୁଛି ।

ବିଦ୍ୟାପୁରୀର ସ୍ୱତ୍ୱାଧିକାରୀ ବନ୍ଧୁ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର ପୁସ୍ତିକାର ପ୍ରକାଶନ ଦାୟିତ୍ୱ ନେଇଛନ୍ତି । ବସ୍ତୁତଃ, ତାଙ୍କର ପ୍ରେରଣା ପାଇ ନ ଥିଲେ ପାଣ୍ଡୁଲିପିଟି ପୂର୍ବପରି ଥାକରେ ପଡ଼ି ପଡ଼ି ନଷ୍ଟ ହୋଇଥାନ୍ତା । ସେଥିପାଇଁ ପୀତାମ୍ବରବାବୁଙ୍କ ନିକଟରେ କୃତଜ୍ଞତା ଜଣାଉଛି ।

ପାଣ୍ଡରା

ଗୁରୁ ପୂର୍ଣ୍ଣିମା, ସମ୍ବତ୍ ୨୦୫୯

ଲେଖକ

# ପୂର୍ବାଭାସ

ଅହଲ୍ୟା, ନାରୀ ଜୀବନର ଯୁଗଯୁଗଧରି ସଞ୍ଚିତବେଦନାର ପ୍ରତିଚ୍ଛବି । ଘଟଣାଟି କେତେକାଂଶରେ ପୁରାଣ-ଇତିହାସ-ଭିତ୍ତିକ, କେତେକାଂଶରେ ପ୍ରକୃତିର ରୂପକଳ୍ପ । ଅହଲ୍ୟା-ଉଦ୍ଧାରଣ ଉପାଖ୍ୟାନଟି ଦାଶରଥି ରାମଙ୍କୁ ପତିତପାବନ ମହାପୁରୁଷଭାବେ ଉତ୍ତରିତ କରିଛି । ବାଲ୍ମୀକିବର୍ଣ୍ଣିତ ରାମାୟଣରେ ସୂଚନାମାତ୍ର ଦିଆହୋଇଛି; ଜନଶ୍ରୁତିରେ ବିସ୍ତୃତି ଲାଭକରିଛି । କବି ଓ ଭାବୁକମାନଙ୍କ ମନକୁ ଆଚ୍ଛନ୍ନ କରିଛି । କଥାର ଉପାଦାନ କରୁଣ; କାବ୍ୟୋନ୍ମୁଖ ସମ୍ବେଦନାର ଉପଜୀବ୍ୟ । ସମାଜର ରୂଢ଼ିବାଦବଳୟକୁ ଛିନ୍ନ କରି ସମୟେ ସମୟେ ଜାଗ୍ରତ ହେଉଥିବା କରୁଣାର ମଧ ଉତ୍ସ ।

ଅହଲ୍ୟା ଆର୍ଯ୍ୟକନ୍ୟା । ବାଲ୍ମୀକି ତାଙ୍କୁ ବ୍ରହ୍ମାଙ୍କ ମାନସକନ୍ୟା ଅପ୍ସରାରୂପେ ବର୍ଣ୍ଣନା କରିଛନ୍ତି । ଆଚରଣରେ କ୍ଷତ୍ରିୟକନ୍ୟାର ଉତ୍ସାହ, ତନୁକାନ୍ତିରେ ଅପ୍ସରାନିନ୍ଦୀ ଶୋଭା । ଅପ୍ସରାସମାଜ ସ୍ୱର୍ଗରାଜ୍ୟର ନର୍ତ୍ତକୀ, ଇନ୍ଦ୍ରଙ୍କର ଅଧୀନା । ସ୍ୱୟଂ ବ୍ରହ୍ମା ସମସ୍ତ ଅପ୍ସରାଙ୍କୁ ଇନ୍ଦ୍ରଙ୍କ ହସ୍ତରେ ଅର୍ପଣ କରିଥିଲେ ମଧ ଅହଲ୍ୟାଙ୍କୁ ତପସ୍ୱୀ ଗୌତମଙ୍କୁ ପ୍ରଦାନ କରିଛନ୍ତି । ତେଣୁ ଉର୍ବଶୀ ପ୍ରଭୃତିଙ୍କଠାରୁ ଅହଲ୍ୟାଙ୍କର ଜୀବନଧାରା ଭିନ୍ନ ହୋଇଯାଇଛି । ଏହି ଅନିନ୍ଦ୍ୟସୁନ୍ଦରୀ ଅହଲ୍ୟା ଜଣେ ମର୍ତ୍ତ୍ୟବାସୀ ଋଷିଙ୍କ ହସ୍ତରେ ନ୍ୟସ୍ତ ହେବାରୁ ଦେବରାଜ ଇନ୍ଦ୍ର ହୁଏତ କ୍ଷୁବ୍ଧ ହୋଇଥିବେ । ଗୌତମଙ୍କ ପ୍ରତି ଅସୂୟା ହୁଏତ ଆସିଥିବ । କିନ୍ତୁ ଗୌତମ କେବଳ ସାଧାରଣ ଋଷି ନ ଥିଲେ; ସେ ଥିଲେ ତଦାନୀନ୍ତନ ଜମ୍ବୁଦ୍ୱୀପର ପ୍ରସିଦ୍ଧ କୁଳପତି । ବିଦେହରାଜ୍ୟରେ ଥିବା ତାଙ୍କର ତପୋବନ- ବହୁ ଋଷିପୁତ୍ର, ରାଜପୁତ୍ରଙ୍କ ସମେତ ଦେବପୁତ୍ରମାନଙ୍କୁ ମଧ ଆକୃଷ୍ଟ କରୁଥିଲା । ଏପରିକି ସ୍ୱୟଂ ଦେବରାଜ ଶକ୍ର-ଇନ୍ଦ୍ର ଏଠାରେ ମଧ ଶିକ୍ଷାଲାଭ କରିଛନ୍ତି । ପ୍ରାଚୀନ ବୈଦିକ ଋଷିକୁଳ ସମସ୍ତ ବୈଷୟିକ ଓ ଅଧ୍ୟାତ୍ମବିଦ୍ୟାର ସମନ୍ୱୟରେ ଯେଉଁ ପାଠ୍ୟକ୍ରମର ପ୍ରଚଳନ କରାଇଥିଲେ, ଗୌତମଙ୍କ ଆଶ୍ରମ ତାହାର ପ୍ରତିନିଧିତ୍ୱ କରୁଥିଲା । ଏହି ସମନ୍ୱିତ ଧାରାର ସ୍ୱରୂପ ଆମେ ବେଦାନ୍ତ-ଉପନିଷଦ୍‌ରେ ଦେଖିବାକୁ ପାଉ ।

''ଦ୍ୱେ ବିଦ୍ୟେ ଅଧୀତବ୍ୟେ । ବିଦ୍ୟା ଅବିଦ୍ୟା ଚ ।
ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ୱା ବିଦ୍ୟୟାଽମୃତମଶ୍ନୁତେ ।''

ଦୁଇପ୍ରକାର ବିଦ୍ୟା ଅଧୀତବ୍ୟ, **ବିଦ୍ୟା ଓ ଅବିଦ୍ୟା** । ଅବିଦ୍ୟାଦ୍ୱାରା ଜରାମୃତ୍ୟୁକୁ ଅତିକ୍ରମ କରି, **ବିଦ୍ୟାରେ** ଅମୃତତ୍ୱ ଲାଭକରାଯାଏ । **ଅବିଦ୍ୟା** ନାସ୍ତିବାଚକ ଶବ୍ଦ ନୁହେଁ । ଏହାର ଅର୍ଥ ହେଉଛି **ବୈଷୟିକ ବିଦ୍ୟା** । ଆୟୁର୍ବେଦ, ଧନୁର୍ବେଦ, ବାସ୍ତୁଶାସ୍ତ୍ର, ଗଣିତ ଓ ଅନ୍ୟାନ୍ୟ ବିଷୟଗତଜ୍ଞାନ ଅବିଦ୍ୟାର ଅନ୍ତର୍ଭୁକ୍ତ । ତଦ୍ଦ୍ୱାରା ମନୁଷ୍ୟ ସୁସ୍ଥ, ସବଳ ଓ ଦୀର୍ଘାୟୁ ହୋଇ ବ୍ୟକ୍ତି ଓ ସାମାଜିକ ଜୀବନକୁ ସୁଖମୟ କରୁଥିଲା । ସମୃଦ୍ଧଜୀବନ ଅଧ୍ୟାତ୍ମବିଦ୍ୟାରେ ପ୍ରୟାସୀ ହେବାପାଇଁ ଅନୁକୂଳ ସୁଯୋଗ ସୃଷ୍ଟି କରେ । ତେଣୁ ବୈଷୟିକ ବିଦ୍ୟା ଓ ଅଧ୍ୟାତ୍ମବିଦ୍ୟା ପରସ୍ପର ପରିପୂରକ । ଏହି ଅଧ୍ୟାତ୍ମବିଦ୍ୟାକୁ ସାଧାରଣଭାବରେ ବିଦ୍ୟା କୁହାଯାଇଛି । ଯଥାର୍ଥ ସୁଖୀ ଓ ସମୃଦ୍ଧ ସମାଜପାଇଁ ଶ୍ରେୟଃ ଓ ପ୍ରେୟଃର ସମନ୍ୱୟ ଆବଶ୍ୟକ । ସେଥିପାଇଁ ଯଥାର୍ଥ ଗବେଷଣା ଓ ଜିଜ୍ଞାସାର ଧାରା ଉତ୍ତରୋତ୍ତର ବିବର୍ତ୍ତିତ ହେଉଥାଏ । ଭୌତିକ ଓ ଆତ୍ମିକ ସମୃଦ୍ଧିପଥରେ ସମାଜକୁ ପରିଚାଳିତ କରିବାପାଇଁ, ଏହି ସମନ୍ୱିତ ଶିକ୍ଷାକ୍ରମ ଥିଲା ଉପଯୁକ୍ତ ମାର୍ଗ । ମହର୍ଷି ଭୃଗୁ ଏବଂ ତଦ୍‌ବଂଶୀୟ ଭାର୍ଗବମାନେ ସେହି ଶିକ୍ଷାକ୍ରମକୁ ବିସ୍ତାରିତ କରିଥିଲେ । ସେମାନେ ଥିଲେ କ୍ରାନ୍ତଦର୍ଶୀ କବି, ଅଗ୍ରଗାମୀ ନେତା । କର୍ମ ଏବଂ ଜ୍ଞାନର ଯଥାର୍ଥ ସଂହତି ମଧ୍ୟରେ ପୁଷ୍କଳ ହୋଇଥିବା ଜ୍ଞାନଚର୍ଚ୍ଚାପ୍ରତି ଦେଶବାସୀ ଆକୃଷ୍ଟ ହେଉଥିଲେ । ପ୍ରତି ମୁହୂର୍ତ୍ତରେ ରୂଢ଼ିବାଦର ଆବଦ୍ଧତାକୁ ଦୂରକରି ସେମାନେ ସୁସଂସ୍କୃତ ସମାଜ ପ୍ରତିଷ୍ଠାରେ ବ୍ରତୀ ଥିଲେ ।

ଦେବତାମାନେ ବୈଦିକ ଆର୍ଯ୍ୟଜନମାନଙ୍କର ମୂଳଗୋଷ୍ଠୀ । କାଳକ୍ରମେ ଏମାନଙ୍କର ଚଳଣି, ଦୃଷ୍ଟିଭଙ୍ଗୀ ଏବଂ ଆଚାରବିଚାରଦ୍ୱାରା ଦେବସଂସ୍କୃତି ପୁଷ୍ଟ ହୋଇଛି । ଆମର ଏହି ଜମ୍ବୁଦ୍ୱୀପରେ ବହୁକାଳରୁ ଭିନ୍ନ ଭିନ୍ନ ମୌଳଗୋଷ୍ଠୀ ବସବାସ କରି ଆସିଛନ୍ତି । ସେମାନଙ୍କ ମଧ୍ୟରେ ବହୁ ଉତ୍ଥାନ, ପତନ, ଦ୍ୱନ୍ଦ୍ୱ ଓ ସମନ୍ୱୟ ସମ୍ଭାବିତ ହୋଇଛି । ଦେବ, ଅସୁର, ଗନ୍ଧର୍ବ, ଯକ୍ଷ, ରକ୍ଷଃ, ବିଦ୍ୟାଧର, ଅପ୍ସର, ନର, କିନ୍ନର, ବାନର, ଭୂତ, ପିଶାଚ, ସିଦ୍ଧ - ପ୍ରତ୍ୟେକ **ଗୋଟିଏ** ଗୋଟିଏ ଗୋଷ୍ଠୀର (Ethnic group) ସଂଜ୍ଞା ମାତ୍ର । ମଣିଷ ମଧ୍ୟରେ **ସମସ୍ତେ ମିଳିତ** ଓ ସମନ୍ୱିତ ହୋଇଯାଇଛନ୍ତି, ସମୟକ୍ରମେ ମୂଳସଂଜ୍ଞା ଲୋପ ପାଇଯାଇଛି । ଅତୀତ କାଳରେ ସେମାନଙ୍କ ମଧ୍ୟରେ

ଗୋଷ୍ଠୀ ସଂଘର୍ଷ ଥିଲା: କିନ୍ତୁ କାଳକ୍ରମେ ସାଂସ୍କୃତିକ ଆଦାନପ୍ରଦାନଭିତ୍ତିରେ ମାନବସଂସ୍କୃତିର ଅଭ୍ୟୁଦୟ ଘଟିଛି । ଅଧ୍ୟାତ୍ମଜ୍ଞାନ/ଆତ୍ମସଂବୋଧ ଏହି ଅଭ୍ୟୁଦୟ ଓ ସମନ୍ୱୟର ଆଧାର । ଜ୍ଞାନଦୀପ୍ତ ଋଷିମାନେ ନିଜଠାରେ ସମସ୍ତବିଶ୍ୱକୁ ଏବଂ ବିଶ୍ୱରେ ନିଜକୁ ସମାହିତ କରି ଉଦାତ୍ତକଣ୍ଠରେ ଗାନ କରିଛନ୍ତି- ''ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ । ମାତାଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ । ସର୍ବେ ଭବନ୍ତୁ ସୁଖିନଃ । ଅସତୋ ମା ସଦ୍‌ଗମୟ । ସମାନଃ ମନ୍ତ୍ରଃ ସମିତିଃ ସମାନୀ । ସତ୍ୟଂ ପରଂ ଧୀମହି ।'' ଜମ୍ବୁଦ୍ୱୀପର ପ୍ରାଚ୍ୟଖଣ୍ଡରେ ଏହି ବିଶ୍ୱାତ୍ମଜ୍ଞାନର ଶିଖା ପ୍ରଦୀପ୍ତ ହୋଇଥିଲା । ଏହି ଦେଶ ଜନଗଣମାନଙ୍କର ଦେଶ । ଏଠାରେ **ଜନ** ଓ **ଗଣ**, ଏହି ଶବ୍ଦଦ୍ୱୟକୁ ତାହାର ମୂଳଅର୍ଥରେ ବୁଝିବାକୁ ହେବ । ମାନସସରୋବର ଅଞ୍ଚଳରୁ ଦେବ-ଅସୁର-ନର-କିନ୍ନର-ଯକ୍ଷ-ଗନ୍ଧର୍ବ-ଅପ୍ସରା ପ୍ରଭୃତି ସବୁଗୋଷ୍ଠୀର ସୃଷ୍ଟି । ଏହି ସ୍ଥାନ ହେଉଛି ବ୍ରହ୍ମାଙ୍କ ଆଦିସ୍ଥାନ । ସେ ହିଁ ସମସ୍ତଙ୍କର ସ୍ରଷ୍ଟା, ବିଧାତା । ମାନସସରୋବରର ଅନ୍ୟନାମ ବ୍ରାହ୍ମସରୋବର । ସେହି ବ୍ରହ୍ମା ହେଉଛନ୍ତି ସ୍ୱୟଂ ହିରଣ୍ୟଗର୍ଭ ପ୍ରଜାପତି । ବେଦରେ ଉଲ୍ଲେଖ ଅଛି- ''ହିରଣ୍ୟଗର୍ଭଃ ସମବର୍ତତାଗ୍ରେ'' । ସମସ୍ତ ଋଷିପରମ୍ପରା ମଧ୍ୟ ସେହିସ୍ଥଳରୁ ସୃଷ୍ଟି ହୋଇଛି । ପ୍ରାଚୀନ ଋଷିମାନେ [ଅଗ୍ରଗାମୀ ନେତା, ଦିବ୍ୟଦ୍ରଷ୍ଟା] ମାନସସରୋବର ଅଞ୍ଚଳରୁ ସାଧାରଣତଃ ଦୁଇଟି ଧାରାରେ ଆମର ଏହି ଭାରତବର୍ଷକୁ ପ୍ରବେଶ କରିଥିଲେ । ଅନ୍ୟ କେତେକ ଧାରା ଗାନ୍ଧାର ରାଜ୍ୟର (ଆଫଗାନିସ୍ଥାନ) ମୁଞ୍ଜାବତ୍ ପର୍ବତମାଳା ଦେଇ ଇରାନ ଓ ମଧ୍ୟଏସିଆକୁ ଗତି କରିଥିଲେ । ଭାରତଭୂଖଣ୍ଡକୁ ପ୍ରବେଶ କରିଥିବା ପୂର୍ବାଧାରାଟି ବ୍ରହ୍ମପୁତ୍ରର କୂଳେ କୂଳେ ପୂର୍ବକୁ ଅଗ୍ରସର ହୋଇ ନେପାଳର ତରାଇ ଅଞ୍ଚଳ ଦେଇ ପୂର୍ବ ଏବଂ ମଧ୍ୟଭାଗରେ ବସତି ସ୍ଥାପନ କରିଥିଲେ । ଅନ୍ୟ ଗୋଟିଏ ଋଷିଧାରା ସିନ୍ଧୁନଦୀର କୂଳେ କୂଳେ ଉତ୍ତର ଓ ପଶ୍ଚିମଭାରତରେ ପ୍ରବେଶ କରିଥିଲେ । ଏମାନେ ସମସ୍ତେ ଆର୍ଯ୍ୟନାମରେ ଅଭିହିତ । ଉଭୟ ଋଷିକୁଳ ବୈଦିକସାହିତ୍ୟକୁ ମଧ୍ୟ ସମୃଦ୍ଧ କରିଛନ୍ତି ।

ପୂର୍ବାଧାରାରେ ଅଥର୍ବାଋଷି ଥିଲେ ପ୍ରଧାନ । ତାଙ୍କର ଅନ୍ୟନାମ ଭୃଗୁ । ବ୍ରହ୍ମବିଦ୍ୟା ଓ ବୈଷୟିକବିଦ୍ୟା, ଉଭୟରେ ଅଥର୍ବା ପ୍ରବୀଣ ଥିଲେ । ତାଙ୍କର ପୁତ୍ର ହେଉଛନ୍ତି **ଉଶନା** ବା ଶୁକ୍ର । ଗୀତାରେ ଉଲ୍ଲେଖ ଅଛି ''କବୀନାମ୍ ଉଶନାଃ କବିଃ'' । ତପଃ, ସ୍ୱାଧ୍ୟାୟ, ମନନଶୀଳତା, ଧନୁର୍ବିଦ୍ୟା, ଆୟୁର୍ବେଦ, ବାସ୍ତୁବିଜ୍ଞାନ, ଜ୍ୟୋତିଷ, ଛନ୍ଦଃ,

ପଶୁପକ୍ଷୀ ସମ୍ବନ୍ଧୀୟ ଶାସ୍ତ୍ର, ବନସ୍ପତି ଓ କୃଷି ବିଜ୍ଞାନ ସମେତ ଅଧ୍ୟାତ୍ମଜ୍ଞାନରେ ଭୃଗୁବଂଶୀୟ ଋଷିମାନେ (ଭାର୍ଗବ) ସାଫଲ୍ୟ ଅର୍ଜନ କରିଥିଲେ । ମହର୍ଷି ବାଲ୍ମୀକି, ଚ୍ୟବନ, ଔର୍ବ୍ୟ, ଜମଦଗ୍ନି, ଦିବୋଦାସ, ବୈନ୍ୟ, ଶୌନକ, ଯାସ୍କ, ବସ୍ତ ପ୍ରଭୃତି ଋଷି ଓ ମନୀଷୀମାନେ ଭାର୍ଗବଧାରାର ଅନ୍ତର୍ଭୁକ୍ତ । ଅଥର୍ବାଙ୍କ ସଦୃଶ ଅଙ୍ଗିରା (ଅଙ୍ଗିରସ୍) ମଧ୍ୟ ଅତି ପ୍ରାଚୀନ ଋଷି ଥିଲେ । ଆଙ୍ଗିରସମାନେ ମୁଖ୍ୟତଃ ସୈନ୍ଧବଧାରାର ନେତୃତ୍ୱ ନେଇଥିଲେ । ସେହି ଧାରାର ଅନ୍ୟନାମ ବାର୍ହସ୍ପତ୍ୟ ବା ବାଶିଷ୍ଠ । ସେମାନେ ଥିଲେ ବିଶେଷଭାବରେ ଯଜ୍ଞକାମୀ । ଧର୍ମ-ଅର୍ଥ-କାମ: ଏହି ତ୍ରିବର୍ଗ ମଧ୍ୟରେ ସେମାନେ ବିଶେଷ ନିଷ୍ଠିତ ରହୁଥିଲେ । ସେଥିପାଇଁ 'ତ୍ରୟୀ' ନାମରେ ଆଖ୍ୟାତ । ଅଥର୍ବବେଦକୁ ତ୍ରୟୀମାନେ ମାନ୍ୟତା ଦେଉ ନ ଥିଲେ ।* ବର୍ଣ୍ଣ ଓ ଜାତିବ୍ୟବସ୍ଥାକୁ ରକ୍ଷଣଶୀଳ ଦୃଷ୍ଟିରେ ଗ୍ରହଣ କରୁଥିବାରୁ ତାହା କାଳକ୍ରମେ ସାମାଜିକ ରୂଢ଼ିବୋଧ ଓ ଆବଦ୍ଧ ଚିନ୍ତାଧାରା ସୃଷ୍ଟି କରୁଥିଲା । ଅନ୍ୟପକ୍ଷରେ ଭାର୍ଗବଧାରା ବିବର୍ତ୍ତନ ମଧ୍ୟଦେଇ ବିଭିନ୍ନ ସଂସ୍କାରକୁ ଗ୍ରହଣ କରୁଥିବାରୁ ଲୋକପ୍ରିୟ ହେବା ସହିତ ପ୍ରଶାସନର ମାନ୍ୟତା ଲାଭ କରୁଥିଲା । ସେମାନଙ୍କ ଚିନ୍ତା ଥିଲା ନମନୀୟ ଓ ମାନବବାଦୀ । ଯଜ୍ଞ ଅପେକ୍ଷା ସେମାନେ ତପସ୍ୟା, ଅନ୍ତଃଚିନ୍ତନ ଓ ସମାହିତ ଯୋଗକୁ ଅଧିକ ଗୌରବ ଦେଉଥିଲେ । ପ୍ରଥମ ଅବସ୍ଥାରେ ଏହି ଦୁଇଟି ଋଷିଧାରା ମଧ୍ୟରେ ପ୍ରତିଷ୍ଠାପାଇଁ ବିବାଦ ଦେଖାଯାଇଛି । ବାଶିଷ୍ଠଧାରା ଭାର୍ଗବମାନଙ୍କୁ ଯଜ୍ଞଭାଗ ଦେଉ ନ ଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ଭାର୍ଗବମାନେ ଯଜ୍ଞକାର୍ଯ୍ୟରେ ସ୍ୱକୀୟ ପ୍ରତିଷ୍ଠା ଲାଭ କରିଛନ୍ତି । ଏପରିକି ପ୍ରମୁଖ ଋତ୍ୱିକ୍ ଆଥର୍ବଣବେଦପାରଗ ହେବା ଉଚିତ ଏବଂ ସେ ହିଁ ଯଜ୍ଞର ମୁଖ୍ୟ ପୁରୋଧାରୂପେ 'ବ୍ରହ୍ମା'ନାମରେ ଆଖ୍ୟାତ ହେଲେ । ଯୋଗ ଓ ତନ୍ତ୍ରମଧ୍ୟରେ ଅଧ୍ୟାତ୍ମଜ୍ଞାନ ବା ବ୍ରହ୍ମବାଦର ପ୍ରସାର ଘଟିଛି । ମାତୃପୂଜାର ମାଧ୍ୟମଦେଇ ପୂର୍ବବିରୋଧର ଅବସାନ ହୋଇଛି । ଭାର୍ଗବମାନେ ଶିବ ଓ ଶକ୍ତିଙ୍କର ଯୁଗପଦ୍ ଉପାସନାକୁ ବହୁ ପୂର୍ବରୁ ସ୍ୱୀକାର କରିନେଇଥିଲେ । ସେହି କ୍ରମରେ ବାର୍ହସ୍ପତ୍ୟମାନେ ମଧ୍ୟ ଶିବଙ୍କୁ ରୁଦ୍ରରୂପେ ଗ୍ରହଣ କରି ଯଜ୍ଞଭାଗ ପ୍ରଦାନ କରିଛନ୍ତି । ତ୍ରିବେଣୀ ସଙ୍ଗମରେ ସମନୁଷ୍ଠିତ ମହାଯଜ୍ଞରେ ଉଭୟଗୋଷ୍ଠୀ ମିଳିତ ହୋଇଥିଲେ, ସେଥିପାଇଁ ସେହି ସ୍ଥାନର ଅନ୍ୟନାମ ପ୍ରୟାଗ (ପ୍ର+ଯାଗ) ।

* 'ଋକ୍', 'ଯଜୁଃ', ଓ 'ସାମ'ର ପ୍ରୟୋଗ ଯଜ୍ଞରେ ବିଶେଷ ଭାବରେ ଥିବାରୁ - ଋକ୍-ଯଜୁଃ-ସାମ, ଏହି ତିନୋଟି ତ୍ରୟୀର ଅନ୍ତର୍ଭୁକ୍ତ ।

ପଶ୍ଚିମୀ ଧାରାଟି ପ୍ରଥମେ ସରସ୍ୱତୀ ଓ ଦୃଷଦ୍‌ବତୀନଦୀର ମଧ୍ୟାଞ୍ଚଳରେ ବାସ କରୁଥିଲେ । ଏହି ସ୍ଥାନର ନାମ ବ୍ରହ୍ମାବର୍ତ୍ତ । ତତ୍ରତ୍ୟ ଋଷିମାନେ ସାରସ୍ୱତ ନାମରେ ମଧ୍ୟ ଅଭିହିତ । ଋଷିଧାରା କ୍ରମେ ସମଗ୍ର ଆର୍ଯ୍ୟାବର୍ତ୍ତ [ଗାଙ୍ଗେୟ ଓ ସୈନ୍ଧବ ଉପତ୍ୟକା] ଓ ଦକ୍ଷିଣାପଥକୁ ସଂପ୍ରସାରିତ ହୋଇଛି । ତ୍ରୟୀ ଓ ଅଥର୍ବମାନଙ୍କ ମଧ୍ୟରେ ଥିବା ବିବାଦ ପ୍ରଶମିତ ହୋଇଯାଇଛି । ଏହି ଆର୍ଯ୍ୟମାନେ ପ୍ରଥମେ ପାଞ୍ଚଟି ଗୋଷ୍ଠୀରେ ବିଭକ୍ତ ଥିଲେ । ଏହି ଗୋଷ୍ଠୀକୁ **ଜନ** କୁହାଯାଏ । **ପଞ୍ଚଜନ** ଆର୍ଯ୍ୟମାନେ **ସପ୍ତସିନ୍ଧୁ** ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । ତେଣୁ **ଜନ** ଶବ୍ଦର ମୂଳଅର୍ଥ ହେଉଛି ବୈଦିକ ଆର୍ଯ୍ୟଗୋଷ୍ଠୀ । ପଞ୍ଚଜନ ମଧ୍ୟରେ **ଭରତଜନ** ଶ୍ରେଷ୍ଠ ଥିଲେ । ତାଙ୍କର ଶାସନଚକ୍ର ସର୍ବତ୍ର ପ୍ରଚଳିତ ହୋଇଥିଲା । କାଳକ୍ରମେ ସେହି ନାମ ଅନୁସାରେ ସମଗ୍ର ଦେଶର ନାମ ଭାରତବର୍ଷ ହୋଇଛି ।* ଆମ ଦେଶରେ ଏହି ବୈଦିକ ଆର୍ଯ୍ୟସମେତ ବହୁ ବେଦେତର ଗୋଷ୍ଠୀ ମୂଳରୁ ବସବାସ କରିଆସିଛନ୍ତି । ସେମାନେ ଗଣଜାତି ନାମରେ ଆଖ୍ୟାତ । କାଳକ୍ରମେ ବୈଦିକ ଆର୍ଯ୍ୟମାନଙ୍କ ସଂସ୍ରବରେ ଆସି ବେଦେତର ଗୋଷ୍ଠୀ **ଦେବଯୋନି** ଆଖ୍ୟା ଲାଭକରିଛନ୍ତି । ଅମରକୋଷରେ ଦଶସଂଖ୍ୟକ ଗଣଜାତିର ନାମ ଦେଖିବାକୁ ମିଳେ, ଯଥା-

ବିଦ୍ୟାଧରୋଽପ୍ସରୋଯକ୍ଷଃ ରକ୍ଷଃ-ଗନ୍ଧର୍ବ-କିନ୍ନରାଃ
ପିଶାଚୋ ଗୁହ୍ୟକଃସିଦ୍ଧଃ ଭତୋଽମୀ ଦେବଯୋନୟଃ ।।

[ବିଦ୍ୟାଧର, ଅପ୍ସରସ୍, ଯକ୍ଷ, ରକ୍ଷଃ, ଗନ୍ଧର୍ବ, କିନ୍ନର, ପିଶାଚ, ଗୁହ୍ୟକ, ସିଦ୍ଧ ଓ ଭୂତ - ଏହି ଜାତିମାନେ ଦେବଯୋନି ବିଶେଷ ]

ସାଧାରଣତଃ ବନ, ପର୍ବତ, ନଦନଦୀ ଅଞ୍ଚଳରେ ଏହି ଗଣସମ୍ପ୍ରଦାୟୀ ଦେବଯୋନି ବସବାସ କରି ଆସୁଛନ୍ତି । ସେମାନେ ହେଉଛନ୍ତି ଆର୍ଯ୍ୟେତର **ଗଣ**ଜାତି । ଆର୍ଯ୍ୟଜନ (ଗୋଷ୍ଠୀ) ଓ ଆର୍ଯ୍ୟେତର **ଗଣ**ଙ୍କ (ଗଣଜାତି) ପରସ୍ପର ସମନ୍ୱୟ ଓ ସହଯୋଗରେ ମହତୀ ଭାରତୀ ସଂସ୍କୃତି ଗଢ଼ିଉଠିଛି । ଏଠାରେ ସମସ୍ତଙ୍କର ସ୍ୱକୀୟ ଅବଦାନ ସ୍ମରଣୀୟ । ଏହି ମିଳନାତ୍ମକ ସଂସ୍କୃତିରେ ଆମ ଦେଶ ଯଥାର୍ଥରେ **ଜନଗଣର** ଦେଶ ହୋଇପାରିଛି । ସେହି କ୍ରମରେ ଆମ ଦେଶରେ ବହୁ ଜନପଦ ଓ ଗଣରାଜ୍ୟ ପ୍ରତିଷ୍ଠିତ ହୋଇଥିଲା ।

---

* ଏ ସମ୍ପର୍କରେ ଦୁଷ୍ୟନ୍ତପୁତ୍ର ଭରତ ଓ ଇକ୍ଷ୍ୱାକୁ ବଂଶୀୟ ଭରତଙ୍କ ନାମର ଉଲ୍ଲେଖ ମଧ୍ୟ ଅଛି ।

ମହାରାଜ କୁଶ ଭରତବଂଶର ଦାୟାଦ । ସେ ଶୋଣନଦୀକୂଳସ୍ଥ ମଧ୍ୟଦେଶରେ ରାଜ୍ୟସ୍ଥାପନ କରିଥିଲେ । ତାଙ୍କର ଅନ୍ୟନାମ କୁଶିକ । ସେହି ବଂଶରେ ଜନ୍ମନେଲେ ପ୍ରଖ୍ୟାତ ଋଷି ବିଶ୍ୱାମିତ୍ର । ବିଶ୍ୱାମିତ୍ର ସଂସ୍କାରବାଦୀ ଓ ଅଗ୍ରଚିନ୍ତକ ଥିଲେ । ସେହି ସମୟକୁ ବର୍ଣ୍ଣବ୍ୟବସ୍ଥା ଦୃଢ଼ ହୋଇ ଆସୁଥାଏ । ଗୁଣକର୍ମଭିତ୍ତିକ ବିଭାଜନ କାଳକ୍ରମେ ବଂଶଗତ ହୋଇଯାଉଥାଏ । ବିଶ୍ୱାମିତ୍ର ରାଜର୍ଷି ଥିଲେ । ବଶିଷ୍ଠଙ୍କ ସହିତ କାମଧେନୁ ଉପଲକ୍ଷ୍ୟରେ ତାଙ୍କର ଶତ୍ରୁତା ଜନ୍ମିଥିଲା । ବିଶ୍ୱାମିତ୍ର ବ୍ରହ୍ମର୍ଷି ପଦବୀ ଲାଭ କରିବାକୁ କଠୋର ତପସ୍ୟା ଆରମ୍ଭ କଲେ । ତାଙ୍କର ତପସ୍ୟା ବହୁବାର ବିଡ଼ମ୍ବିତ ହୋଇଛି । ଇନ୍ଦ୍ରପ୍ରଭୃତି ଦେବତାମାନେ ନିଜନିଜର ପ୍ରାଧାନ୍ୟ ରଖିବାକୁ ଇଚ୍ଛାକରି ବଶିଷ୍ଠପ୍ରବର୍ତ୍ତିତ ବର୍ଣ୍ଣ/ଜାତିବ୍ୟବସ୍ଥାର ସ୍ଥିତାବସ୍ଥା ରଖିବାକୁ ଚାହୁଁଥିଲେ । ବିଶ୍ୱାମିତ୍ର ସଂସ୍କାରପ୍ରୟାସୀ ହୋଇଥିବାରୁ ଗୁଣକର୍ମକୁ ବର୍ଣ୍ଣବ୍ୟବସ୍ଥାର ଭିତ୍ତିରୂପେ ଗ୍ରହଣପାଇଁ ଆତ୍ମିକ ତପସ୍ୟା ଏବଂ ସାମାଜିକ ବିପ୍ଳବର ସୂତ୍ରପାତ କଲେ । ତାଙ୍କ ବିପ୍ଳବର ବାର୍ତ୍ତା ସମଗ୍ର ଜମ୍ବୁଦ୍ୱୀପକୁ ଆନ୍ଦୋଳିତ କରିଦେଲା । ଜନ୍ମବାଦ ଓ ପୌରୁଷର ଯୁଗାନ୍ତକାରୀ ବିରୋଧ ମଧ୍ୟରେ ମହର୍ଷିଙ୍କର ପ୍ରୟାସ ବହୁବାର ବିଘ୍ନିତ ହୋଇଛି, କିନ୍ତୁ ସେ ନିରୁତ୍ସାହିତ ହୋଇ ନାହାନ୍ତି । ଦେବସଂସ୍କୃତି ମଧ୍ୟରେ ଥିବା ରୂଢ଼ିବାଦର ଚିନ୍ତାକୁ ବାରମ୍ବାର ଆଘାତ ଦେଇ ମାନବିକ ମୂଲ୍ୟବୋଧର ସଂପ୍ରସାରଣ କରିଛନ୍ତି । ଏକପକ୍ଷରେ ଦେବଜନଙ୍କ ପୃଷ୍ଠପୋଷକତାରେ ସୁପ୍ରତିଷ୍ଠ ବଶିଷ୍ଠ ଓ ଅନ୍ୟପକ୍ଷରେ ମାନବବାଦୀ ବିଶ୍ୱାମିତ୍ର - ବହୁବର୍ଷଯାବତ୍ ବିଗ୍ରହର ସମ୍ମୁଖୀନ ହୋଇଛନ୍ତି । ପରିଶେଷରେ ଉଭୟଙ୍କ ଦୃଷ୍ଟିଭଙ୍ଗୀରେ ସମନ୍ୱୟ ଆସିଛି । ସାରସ୍ୱତ ଆର୍ଯ୍ୟମାନେ ନିଜର ଆଚାର ଓ ଚଳଣିକୁ ରକ୍ଷା କରିବାପାଇଁ ଅନ୍ୟମାନଙ୍କଠାରୁ ଦୂରେଇ ରହୁଥିଲେ, ଯାହାକୁ କହନ୍ତି ଅସ୍ପୃଶ୍ୟ-ସଚେତନତା । ସେତେବେଳେ ମଧ୍ୟ ଏହା ବ୍ୟାଧିରେ ପରିଣତ ହୋଇଥିଲା । ତଥାକଥିତ ଉଚ୍ଚବର୍ଣ୍ଣର ଆର୍ଯ୍ୟମାନେ ଘଟଣାବଶତଃ ଯଦି ଆର୍ଯ୍ୟେତରମାନଙ୍କ ସଂସ୍ରବରେ ଆସୁଥିଲେ, ଅପାଙ୍‌କ୍ତେୟ ହୋଇ ଯାଉଥିଲେ । ଏହାର ସୁଯୋଗ ନେଇ ପ୍ରତୀପମନୋଭାବାପନ୍ନ ଦୈତ୍ୟ ଓ ରାକ୍ଷସମାନେ ଆର୍ଯ୍ୟମାନଙ୍କର ଏହି ଦୁର୍ବଳ ତତ୍ତ୍ୱ ଉପରେ ବାରମ୍ବାର ଆଘାତ କରୁଥିଲେ । ନିରୀହ ତଥା ଦୁର୍ବଳ ଆର୍ଯ୍ୟମାନେ ତଦ୍ୱାରା ବିଶେଷ ବିପନ୍ନ ହେଉଥିଲେ । ବିଶେଷକରି ନାରୀମାନଙ୍କର ଅବସ୍ଥା ଦୟନୀୟ ହେଉଥିଲା । ବିଶ୍ୱାମିତ୍ର ଏହି ସ୍ପର୍ଶକାତର ଚିନ୍ତା ଓ ରୂଢ଼ିବାଦରୁ ନିଜକୁ ମୁକ୍ତ ରଖି ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହେବାପାଇଁ ଆର୍ଯ୍ୟମାନଙ୍କୁ ଆହ୍ୱାନ ଦେଲେ । ବହୁ ଗଣଜାତି ଏବଂ କିରାତମାନଙ୍କୁ ସେ ଆର୍ଯ୍ୟୀକୃତ

କରାଇଲେ । ଜାତିତତ୍ତ୍ୱ ଉପରେ ଗୁରୁତ୍ୱ ନ ଦେଇ ଆର୍ଯ୍ୟଶବ୍ଦକୁ ସେ ଗୁଣଧର୍ମର ତତ୍ତ୍ୱରୂପେ ବ୍ୟାଖ୍ୟାନ କଲେ । ''କୃଣ୍ୱନ୍ତୁ ବିଶ୍ୱମାର୍ଯ୍ୟମ୍'' ଏହି ଆଦର୍ଶକୁ ସାମାଜିକ ରୂପ ଦେଇ ଅସ୍ପୃଶ୍ୟତାବ୍ୟାଧିକୁ ଦୂର କରିବାପାଇଁ ପ୍ରୟାସୀ ହେଲେ । ଫଳରେ ଭାରତୀସଂସ୍କୃତିର ସଂପ୍ରସାରଣ ହେଲା, ଦଳିତ ଓ ପତିତମାନେ ତାଙ୍କୁ ପାବନକାରୀ ତ୍ରାଣକର୍ତ୍ତାରୂପେ ଜ୍ଞାନ କଲେ । ସେ ଥିଲେ ଏକାନ୍ତ ମାନବବାଦୀ, ଦେବଜାତିର ଅହଂକୁ ଆଘାତକରି ବର୍ଣ୍ଣବ୍ୟବସ୍ଥାକୁ ଗୁଣକର୍ମର ଆଚରଣଭିତ୍ତିରେ ବାସ୍ତବାଭିମୁଖୀ କରିପାରିଥିଲେ । ସମୟକ୍ରମେ ନିଜର ପ୍ରଚେଷ୍ଟା ଓ ତପଃସ୍ୱାଧ୍ୟାୟ ବଳରେ ରାଜର୍ଷି ବିଶ୍ୱାମିତ୍ର ବ୍ରହ୍ମର୍ଷି ପଦବୀରେ ଅଧିରୂଢ଼ ହେଲେ । ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ ମଧ୍ୟରେ ସ୍ୱଭାବବନ୍ଧୁତ୍ୱ ମଧ୍ୟ ଆସିଥିଲା । ସମାଜ ଏବଂ ଶାସନତନ୍ତ୍ରରେ ତାଙ୍କର ପ୍ରଚେଷ୍ଟା ଅପୂର୍ବ ପରିବର୍ତ୍ତନ ଆଣିଲା । ଭରତବଂଶୀ ବହୁ ଶାସକ ଏବଂ ମିଥିଳାର ଜନକ ଉପାଧିଧାରୀ ରାଜର୍ଷିମାନେ ବିଶ୍ୱାମିତ୍ରଙ୍କ ଭୂମିକାକୁ ଅନୁମୋଦନ କରୁଥାନ୍ତି । ସମାଜରେ ମହର୍ଷି ବିଶ୍ୱାମିତ୍ର **ଦ୍ୱିତୀୟ ପ୍ରଜାପତି**ରୂପେ ମାନ୍ୟତା ଲାଭକଲେ । କୁଳପତି ଗୌତମ ଓ ସ୍ୱାଧ୍ୟାୟନିରତ ବିଦ୍ୟାର୍ଥୀମାନେ ମହର୍ଷିଙ୍କର ସାମାଜିକ ବିପ୍ଳବକୁ ଯଥୋଚିତ ସମ୍ମାନ ଜଣାଉଥାନ୍ତି । ବଶିଷ୍ଠପରମ୍ପରା କେବଳ ସୂର୍ଯ୍ୟବଂଶୀୟ ନରପତିମାନଙ୍କ ମଧ୍ୟରେ ସୀମିତ ହୋଇଯାଇଥାଏ । ବିଶ୍ୱାମିତ୍ରଙ୍କ ପ୍ରଚାରିତ ଗାୟତ୍ରୀଧାରାର ଚେତନା ଏବଂ ପ୍ରାଣବତ୍ତା ସମସ୍ତ ଋଷିସମାଜକୁ ଉଦ୍‌ବୁଦ୍ଧ କରୁଥାଏ । ସତେଅବା ଆଧ୍ୟାତ୍ମିକତାର କ୍ରାନ୍ତିବିନ୍ଦୁକୁ ସ୍ପର୍ଶ କରିବାପାଇଁ ସମସ୍ତେ ଉନ୍ମୁଖ । ସେହି ଜ୍ଞାନପ୍ରାଚୁର୍ଯ୍ୟଭରା ପରିବେଶ ମଧ୍ୟରେ ଦୀପ୍ତିସ୍ତମ୍ଭସ୍ୱରୂପ ଥିଲା କୁଳପତି ଗୌତମଙ୍କ ଆଶ୍ରମ ।

ଋଷିପତ୍ନୀ ଅହଲ୍ୟା ଏକାଧାରରେ ପତିପ୍ରାଣା, ଆଶ୍ରମର କାର୍ଯ୍ୟବିନ୍ୟାସରେ କୁଶଳିନୀ, ବିଦୁଷୀ, ସ୍ନେହମୟୀ ଓ ଯଥାର୍ଥ ସହଧର୍ମିଣୀ । ଅସଂଖ୍ୟ ବିଦ୍ୟାର୍ଥୀଙ୍କ ମେଳରେ ଗୌତମଙ୍କ ଋଷିକୁଳ ଅଦ୍ୱିତୀୟ, ବୈଷୟିକ ଏବଂ ଅଧ୍ୟାତ୍ମଜ୍ଞାନସତ୍ରରେ ଉର୍ଜିତ । ପ୍ରତ୍ୟେକ କାର୍ଯ୍ୟକ୍ରମର ଶୃଙ୍ଖଳାବିନ୍ୟାସ, ବୃକ୍ଷଲତାର ଯତ୍ନ, ପରିଷ୍କାରପରିଚ୍ଛନ୍ନତା, ଗୋସେବା, ଅନ୍ତେବାସୀମାନଙ୍କର ସ୍ୱାଚ୍ଛନ୍ଦ୍ୟ, ତପସ୍ୟାର କ୍ରମବର୍ଦ୍ଧିଷ୍ଣୁ ଅଭ୍ୟୁଦୟ, ଅତିଥିସେବା, ଯଜ୍ଞାନୁଷ୍ଠାନ, ସର୍ବତ୍ର - ଅହଲ୍ୟାଙ୍କର ଦକ୍ଷତା ପରିସ୍ଫୁଟ ହେଉଥାଏ । ବସ୍ତୁତଃ ଋଷିପତ୍ନୀ ଥିଲେ ଆଶ୍ରମ ଏବଂ ଆଶ୍ରମଧର୍ମର ସଞ୍ଚରଣଶୀଳା ଦେବୀମାତୃକା । ବିଦ୍ୟାର୍ଥୀମାନଙ୍କ ପକ୍ଷରେ ସ୍ୱୟଂପ୍ରଭା ବାଗ୍‌ଦେବୀ । ବହୁ ଋଷିପୁତ୍ର, ରାଜପୁତ୍ର ଓ ଦେବପୁତ୍ର ବିଦ୍ୟାଲାଭ କରୁଥାନ୍ତି । କୁଳପତି ଗୌତମ

ସମୟେ ସମୟେ ତପସ୍ୟାର ନୂତନ ଉପଲବ୍ଧିପାଇଁ ହିମାଦ୍ରିର ନିକାଞ୍ଚନ ତପୋବନକୁ ଚାଲିଯାନ୍ତି । ଯାହା କହନ୍ତି "ବିଜନତା କାହିଁ ତୋ ବେଶ ମୋହନ: ଯେ ବେଶେ ମୋହିଲୁ ତୁ ମୁନିନୟନ" । ତାଙ୍କର ଅନୁପସ୍ଥିତିରେ ଆଶ୍ରମର ଦାୟିତ୍ୱ ଋଷିପତ୍ନୀଙ୍କ ତତ୍ତ୍ୱାବଧାନରେ ଅନ୍ୟ ଆଚାର୍ଯ୍ୟମାନଙ୍କ କର୍ତ୍ତୃକ ସୁସମାହିତ ହେଉଥାଏ । ତପୋବନର ଆଚାରବିଚାର କ୍ଷୁରଧାର ପରି ତୀକ୍ଷ୍ଣ, ସୁନିର୍ଦ୍ଦିଷ୍ଟ । କୌଣସି ବ୍ୟତିକ୍ରମର ଆଶଙ୍କା ନ ଥାଏ ।

ଏକଦା ଦେବରାଜ ଇନ୍ଦ୍ର ସେହି ଆଶ୍ରମର ଅନ୍ତେବାସୀ ଭାବରେ ଶିକ୍ଷାଲାଭ କରୁଥାନ୍ତି । ଦେବରାଜଙ୍କ ପ୍ରତି ସମସ୍ତଙ୍କର ସ୍ୱତନ୍ତ୍ର ସମ୍ଭ୍ରମ ଥାଏ । ଶିକ୍ଷାଲାଭ କରୁଥିଲେ ମଧ୍ୟ ତାଙ୍କୁ ଅତିଥି ଭାବରେ ଗ୍ରହଣ କରାଯାଇଥାଏ । ଦେବସଂସ୍କୃତି ସ୍ୱଭାବତଃ ବିଳାସପୂର୍ଣ୍ଣ । ସେମାନଙ୍କର ଉଦାରତା ଅଛି, କିନ୍ତୁ ଆଚରଣ ସଂଯମହୀନ । ପ୍ରାଚୁର୍ଯ୍ୟମଧ୍ୟରେ ଅପ୍ସରାମାନଙ୍କର ଲାସ୍ୟହାସ୍ୟକୁ ଉପଭୋଗ କରିବା ଦେବତାମାନଙ୍କର ଅଭ୍ୟାସ । ଇନ୍ଦ୍ରିୟଲାଳସାକୁ ଚରିତାର୍ଥ କରିବାପାଇଁ ତଥାକଥିତ ଦେବତାମାନେ ଋଷିମାନଙ୍କ ଦୃଷ୍ଟିରେ ବାରମ୍ବାର ବିଡ଼ମ୍ବିତ ହୋଇଛନ୍ତି । ସେମାନେ ଋଷି-ପ୍ରବର୍ତ୍ତିତ ତପସ୍ୟା ଓ ସଂଯମଧାରାରେ ଅନଭ୍ୟସ୍ତ । ଦେବରାଜ ଇନ୍ଦ୍ର ଅହଲ୍ୟାଙ୍କର ଅପ୍ସରାନିନ୍ଦୀ-ରୂପଲାବଣ୍ୟରେ ସତତ ମୁଗ୍ଧ । ମନମଧ୍ୟରେ କାମନାର କୁହେଳି । ରାଜପୁରୁଷ ହୋଇଥିବାରୁ ଆଶ୍ରମରେ ତାଙ୍କପ୍ରତି ଅନନ୍ୟ ସମ୍ଭ୍ରମ । ବିଶେଷକରି ମହାରାଜ ଜନକ ଦେବରାଜଙ୍କ ପ୍ରତି ମାନ୍ୟତା ପ୍ରଦର୍ଶନ କରୁଥିଲେ । ତେଣୁ ଋଷିପତ୍ନୀ ଇନ୍ଦ୍ରଙ୍କ ସ୍ୱାଚ୍ଛନ୍ଦ୍ୟ ପ୍ରତି ସତତ ଯତ୍ନଶୀଳା ଥିଲେ । ସ୍ୱୟଂ ଦେବକନ୍ୟା ଅପ୍ସରା ହୋଇଥିବାରୁ ଦେବମର୍ଯ୍ୟାଦାବିନ୍ୟାସରେ ନିପୁଣା ଥିଲେ । ଇନ୍ଦ୍ରଙ୍କ ମନମଧ୍ୟରେ ଅହଲ୍ୟାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଯେଉଁ ରେଖାପାତ କରିଥିଲା, ତାହା କ୍ରମେ ବିସ୍ତୃତ ଓ ଗଭୀର ହେଲା । ଦେବକନ୍ୟା ଉର୍ବଶୀଙ୍କର ଅପୂର୍ବ ଲାବଣ୍ୟ ଅହଲ୍ୟାଙ୍କ ତନିମାରେ ସତେ ଅବା ପ୍ରତିଫଳିତ ହେଉଥାଏ । ଉର୍ବଶୀଙ୍କର ସମ୍ଭାବନୀୟ ତପସ୍ୟାସ୍ନିଗ୍ଧମୂର୍ତ୍ତିର ଦ୍ୱିତୀୟକଳ୍ପ । ଦେବତାମାନେ ନିଜ ଇଚ୍ଛା ଅନୁସାରେ ରୂପ ପରିବର୍ତ୍ତନ କରିପାରନ୍ତି । ଅହଲ୍ୟାଙ୍କ ରୂପଶୋଭା ଭାବିଭାବି କାମପରତନ୍ତ୍ର ଇନ୍ଦ୍ର ଏକଦା ପ୍ରତ୍ୟୁଷରୁ ଗୌତମ ରୂପ ଧାରଣ କରି ଅହଲ୍ୟାଙ୍କ କୁଟୀର ମଧ୍ୟକୁ ପ୍ରବେଶ କଲେ ।.ଅନ୍ୟପକ୍ଷରେ ଅହଲ୍ୟା ଗୌତମଙ୍କ ବିଷୟ ଭାବୁଥିଲେ । ତପସ୍ୱିନୀ ହୃଦୟରେ କାମିନୀର ଅନୁଚିନ୍ତା ସଂଗୋପିତ ହୋଇଥାଏ । ସେତେବେଳକୁ ଆଶ୍ରମରୁ ଅନ୍ଧକାର ଦୂର ହୋଇ ନ ଥାଏ । ଋତୁସ୍ନାତା

ଅହଲ୍ୟାଙ୍କ ଉଦ୍‌ବେଳ ହୃଦୟକୁ ବୁଝିପାରି ମାୟାବେଶଧାରୀ ଇନ୍ଦ୍ର ଅହଲ୍ୟାଙ୍କୁ ସାଶ୍ଳେଷ ରତିଯାଚ୍‌ଞା କଲେ । ତପସ୍ୱିନୀ ହୃଦୟରେ ସଂଗୋପିତ ରିରଂସା ଉନ୍ମୁକ୍ତ ହୋଇଗଲା । ରତିକ୍ରୀଡ଼ାର ନିଧୁବନ ମଧ୍ୟରେ ଗୌତମରୂପୀ ଇନ୍ଦ୍ରଙ୍କର ଶଙ୍କିତ ହାବଭାବରୁ ଅହଲ୍ୟା ଚିହ୍ନିପାରି ବିଚଳିତ ହୋଇଛନ୍ତି, କିନ୍ତୁ ସେତେବେଳକୁ କାମନାର ସ୍ରୋତ ସଂଯମର ବନ୍ଧକୁ ଭାଙ୍ଗି ଦେଇଥାଏ । ଇନ୍ଦ୍ରଙ୍କ ଆଃଶ୍ଳେଷ ମଧ୍ୟରେ ଅହଲ୍ୟାଙ୍କର ଅନ୍ତର୍ମନ ଆବେଶମୂର୍ଚ୍ଛିତ । ଆବେଶ ପରେ ଋଷିପତ୍ନୀ ଚିନ୍ତାକୁଳ ହୋଇ ନିଜକୁ ଅନ୍ୱେଷଣ କଲେ । ଇନ୍ଦ୍ରଙ୍କ ମନରେ ମଧ୍ୟ ପ୍ରବଳ ଶଙ୍କା । ନିଜର ଅନୁନୟରେ ଋଷିପତ୍ନୀଙ୍କୁ ସନ୍ତର୍ପିତ କରି କ୍ଷମା ଭିକ୍ଷାକଲେ । ଅହଲ୍ୟାଙ୍କ ହୃଦୟ ନାରୀତ୍ୱର ସୁକୋମଳତାରେ ପରିପୂର୍ଣ୍ଣ । ଅନ୍ତର୍ମନରେ ଦେବକନ୍ୟାର ସ୍ୱଭାବବିଳାସୀ ରାଜସିକତା ଏବଂ ବହିର୍ମନରେ ଋଷିପତ୍ନୀର ସାତ୍ତ୍ୱିକ ନିର୍ମୋକ ଆଶ୍ରମ ପରିବେଶରେ ଲୀଳାୟିତ ହେଉଥିଲା । ସାନୁକ୍ରୋଶା ଅହଲ୍ୟା ଇନ୍ଦ୍ରଙ୍କୁ କିଛି କହିପାରିଲେ ନାହିଁ । ନିଜର ଏବଂ ଆଶ୍ରମର ମର୍ଯ୍ୟାଦା ଯେପରି ସୁରକ୍ଷିତ ରହେ, ତାହାହିଁ ପ୍ରାର୍ଥନା କଲେ ।

ମହର୍ଷି ବାଲ୍ମୀକି ଋଷିପତ୍ନୀଙ୍କ ଅନ୍ତର୍ମନର କାମନା ଓ ମାନବୀୟ ତ୍ରୁଟିକୁ ଦର୍ଶାଇ ଦେଇଛନ୍ତି । ସେ ଋଷିବେଶଧାରୀ ଇନ୍ଦ୍ରଙ୍କୁ ଆଚ୍ଛନ୍ନ ଆବେଶ ମଧ୍ୟରେ ଚିହ୍ନିପାରି ନାହାନ୍ତି, ଅଥବା ଜାଣିପାରି ମଧ୍ୟ ପ୍ରତ୍ୟାଖ୍ୟାନ କରିପାରି ନାହାନ୍ତି । ଦେବରାଜଙ୍କ ବିନୟକୁତୂହଳରେ ନିଜର ସ୍ଥିରତା ହରାଇ ଆତ୍ମସମର୍ପଣ କରିଛନ୍ତି । ଇନ୍ଦ୍ରଙ୍କ ପ୍ରଣୟ ଲାଭ କରି ଅହଲ୍ୟାଙ୍କର କାମିନୀହୃଦୟ ହୁଏତ ସନ୍ତର୍ପିତ ହୋଇଛି, କିନ୍ତୁ ଋଷିପତ୍ନୀଙ୍କ ସୌଭାଗ୍ୟସ୍ତବକ ଝଡ଼ିପଡ଼ିଛି । ଛଦ୍ମବେଶୀ ଇନ୍ଦ୍ର ଆଶ୍ରମ ତ୍ୟାଗ କରିବା ସମୟରେ ଗୌତମ ଉପସ୍ଥିତ ହୋଇଛନ୍ତି । ମୁନିବେଶଧାରୀ ଇନ୍ଦ୍ରଙ୍କୁ ଦେଖିବାମାତ୍ରେ ଗୌତମ ସବୁକଥା ବୁଝିପାରି କୋପାବିଷ୍ଟ ଚିତ୍ତରେ କହିଛନ୍ତି, ''ମୋର ଛଦ୍ମବେଶ ଧରି ଆଜି ତୁମେ ଯେଉଁ ଗର୍ହିତ କାର୍ଯ୍ୟ କରିଛ, ସେଥିପାଇଁ ତୁମେ ନାରୀସମ୍ଭୋଗରେ ଅକ୍ଷମ ଓ ବିଫଳ ହୁଅ''; ଏବଂ ଏହା କହିବାମାତ୍ରେ ସହସ୍ରାକ୍ଷ ଇନ୍ଦ୍ରଙ୍କ ବୃଷଣଦ୍ୱୟ ତଳେ ଖସିପଡ଼ିଲା । ଅଭିଶପ୍ତ ଇନ୍ଦ୍ର ଲଜ୍ଜାରେ ପଳାଇଗଲେ । ମହର୍ଷି, ପତ୍ନୀ ଅହଲ୍ୟାଙ୍କୁ ଅଭିଶାପ ଦେଇ କହିଲେ, ''ସହସ୍ର ବର୍ଷଧରି ତୁମେ ନିରାହାରା, ବାତଭକ୍ଷା ଓ ଭସ୍ମଶାୟିନୀ ହୋଇ ସମସ୍ତଙ୍କ ଅଲକ୍ଷ୍ୟରେ ଶିଳାଖଣ୍ଡ ସଦୃଶ ରହିଥିବ । ଦାଶରଥି ରାମ ଯେତେବେଳେ ଏହି ଭୀଷଣ ବନଭୂମିକୁ ଆସିବେ, ତୁମେ ପବିତ୍ରୀକୃତ ହୋଇ

ଲୋଭ-ମୋହ-ଶୂନ୍ୟ ଚିତ୍ତରେ ସେମାନଙ୍କର ଆତିଥ୍ୟ ସତ୍କାରକରି ନିଜ ରୂପ ଫେରିପାଇବ ଏବଂ ମୋ ସହିତ ମିଳିତ ହେବ ।''

[ ତଥା ଶପ୍ତ୍ୱାଚ ବୈ ଶକ୍ରଂ ଭାର୍ଯ୍ୟାମପିଚ ଶପ୍ତବାନ୍,
ଇହ ବର୍ଷସହସ୍ରାଣି ବହୂନି ନିବସିଷ୍ୟସି ।
ବାତଭକ୍ଷା ନିରାହାରା ତପ୍ୟନ୍ତୀ ଭସ୍ମଶାୟିନୀ,
ଅଦୃଶ୍ୟା ସର୍ବଭୂତାନାମାଶ୍ରମେଽସ୍ମିନ୍ ନିବତ୍ସ୍ୟସି ।
ଯଦା ତ୍ୱେତଦ୍‌ବନଂ ଘୋରଂ ରାମୋ ଦଶରଥାତ୍ମଜଃ,
ଆଗମିଷ୍ୟତି ଦୁର୍ଦ୍ଧର୍ଷସ୍ତଦା ପୂତା ଭବିଷ୍ୟସି ।
ତସ୍ୟାତିଥ୍ୟେନ ଦୁର୍ବୃତ୍ତେ ଲୋଭମୋହବିବର୍ଜିତା,
ମତ୍‌ସକାଶଂ ମୁଦାଯୁକ୍ତା ସ୍ୱଂବପୁର୍ଧାରୟିଷ୍ୟସି ।। ]

- ରାମାୟଣମ୍ -

ଜନଶ୍ରୁତି ଅହଲ୍ୟାଙ୍କୁ ଅପ୍ସରାକନ୍ୟା ଭାବରେ ଚିତ୍ରଣ କରିଛି । ଗୌତମଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ତାଙ୍କ ହସ୍ତରେ ଏହି କନ୍ୟାଙ୍କୁ ପ୍ରଦାନ କରିଥିଲେ । କୁମାରୀ ଅହଲ୍ୟା ଗୌତମଙ୍କ ଆଶ୍ରମରେ କୈଶୋର ବିତାଇଛନ୍ତି । ବ୍ରହ୍ମା ଅନ୍ୟାନ୍ୟ ଅପ୍ସରାକନ୍ୟାମାନଙ୍କୁ ଇନ୍ଦ୍ରଙ୍କ ହସ୍ତରେ ପ୍ରଦାନ କରିଥିଲେ । ଅପ୍ସରାସମାଜ ଇନ୍ଦ୍ରଙ୍କର କର୍ତ୍ତୃତ୍ୱାଧୀନ । ସେହି ଭାବରେ ଅହଲ୍ୟାଙ୍କର ଇନ୍ଦ୍ରଙ୍କପ୍ରତି ସ୍ୱଭାବ-ସମ୍ଭ୍ରମ ଥାଇପାରେ । ଅନ୍ୟପକ୍ଷରେ ଅନିନ୍ଦ୍ୟସୁନ୍ଦରୀ ଅହଲ୍ୟା ଜଣେ ମନୁଷ୍ୟଧର୍ମା ଋଷିଙ୍କ ହସ୍ତରେ ନ୍ୟସ୍ତ ହେବେ; ଏହା ଇନ୍ଦ୍ରଙ୍କ ଅହଂକାରକୁ କ୍ଷୁଣ୍ଣ କରିଥିବ । ଗୌତମଙ୍କ ପ୍ରତି ଇନ୍ଦ୍ରଙ୍କର ସ୍ୱଭାବ-ଅସୂୟା ଆସିଥିବ । ହୁଏତ ଅହଲ୍ୟାଙ୍କ ଚିତ୍ତବୃତ୍ତିରେ ଅପ୍ସରା-ସୁଲଭ କାମାୟନମାର୍ଗର ସଂସ୍କାର ଥିବ । ସେହି ସ୍ତରରୁ ଉତ୍ତରିତ ହୋଇ ଋଷିପତ୍ନୀର ସଂଯମଯୋଗ୍ୟତା ଲାଭ କରିବାପାଇଁ ଗୌତମଙ୍କ ଅଭିଶାପ ଉଦ୍ଦିଷ୍ଟ ହୋଇପାରେ ।

ଲୋକଲୋଚନର ଅଗୋଚରରେ ଅନୁତପ୍ତା ଅହଲ୍ୟା ଶିଳାଖଣ୍ଡସଦୃଶ ବହୁବର୍ଷ ବିତାଇଛନ୍ତି । ସମଗ୍ର ବିବରଣୀକୁ ବିଚାରକଲେ ଏହା ଏକ ରୂପକଳ୍ପପ୍ରସଙ୍ଗ ପରି ମନେହୁଏ । କିନ୍ତୁ ଯେ କୌଣସି ରୂପକଳ୍ପ ମୂଳରେ ମଣିଷମନର ବେଦନା ଓ ଅଭିବ୍ୟକ୍ତି ରହିଛି, ଏହା ନିଃସନ୍ଦେହ । ଆମେ ଦିବ୍ୟ ବା ଅଲୌକିକ ଯାହାସବୁ କହୁ, ସେହି ଘଟଣାରେ ମଣିଷର ଆଧାରସତ୍ତ୍ୱ ରହିଛି । ପ୍ରକୃତିକୁ ଅତିକ୍ରମ କରି କୌଣସି ଘଟଣା

ଘଟେ ନାହିଁ । ଆମ ପକ୍ଷରେ ତଦୀୟ ପ୍ରକୃତିଧାରା କୌଣସି କାରଣବଶତଃ ଅବୋଧ ଅଥବା ଅଜ୍ଞେୟ ହେଲେ, ଆମେ ତାହାକୁ ଅଲୌକିକ କହିଥାଉ । ସେଥିମଧ୍ୟକୁ ଆପେ ଆପେ ଅତିରଞ୍ଜନ ଅଥବା କାବ୍ୟିକ ଚମତ୍କାରିତା ଚାଲିଆସେ । ଫଳରେ ମାନବିକ ଅଭିବ୍ୟକ୍ତି, ଅନୁଭୂତି ଆଚ୍ଛନ୍ନ ହୋଇଯାଏ ।

ରାଜର୍ଷି ଜନକଙ୍କ ରାଜସଭାରେ ଗୌତମବଂଶୀୟ ଶତାନନ୍ଦଙ୍କୁ ରାଜପୁରୋହିତରୂପେ ବର୍ଣ୍ଣନା କରାଯାଇଛି । ଏହି ଶତାନନ୍ଦ ହେଉଛନ୍ତି ଋଷିଗୌତମ ଓ ଅହଲ୍ୟାଙ୍କର ପୁତ୍ର । ରାମ ଓ ସୀତାଙ୍କର ବିବାହୋତ୍ସବରେ ଋଷିପୁତ୍ର ଶତାନନ୍ଦ ପୌରୋହିତ୍ୟ କରିଥିଲେ । ଏହା ସ୍ୱାଭାବିକ - ଅହଲ୍ୟା ଏକ ଚରିତ୍ରବିଶେଷ, କିନ୍ତୁ କାଳକ୍ରମେ ରୂପକଳ୍ପର ସ୍ଥାନ ନେଇଛନ୍ତି । ସମ୍ଭବତଃ, ଅହଲ୍ୟା ନିଜର ଅନ୍ତର୍ବେଦନାରେ ଜନସମାଜରୁ ନିଜକୁ ଦୂରେଇ ରଖି ଅନୁତାପ ମଧ୍ୟରେ ତ୍ୟକ୍ତଆଶ୍ରମରେ ଏକାକିନୀ ଜୀବନ ବିତାଇଛନ୍ତି । କ୍ରୂର ଘଟଣାବଳୀର ଶରବ୍ୟ ହୋଇ ସେ ଥିଲେ ନିଃସଙ୍ଗତପସ୍ୱିନୀ । ଅନାୟତ୍ତ ଘଟଣାର କ୍ରୂର ପରିହାସ ଓ ସମାଜର ବିଦ୍ରୂପ ତାଙ୍କୁ ନିର୍ବେଦ କରିଦେଇଛି । କାରୁଣିକ ଶ୍ରୀରାମଙ୍କ ସାନ୍ନିଧ୍ୟ ଓ ସମ୍ମାନ ପ୍ରଦର୍ଶନରେ ତାଙ୍କ ମନର ଗ୍ଲାନି ଦୂର ହୋଇଯାଇଛି । ସେ ସମାଜରେ ପୁନଃପ୍ରତିଷ୍ଠା ଲାଭକରି ଋଷିପତ୍ନୀର ଗୌରବ ଫେରିପାଇଛନ୍ତି । ଗୌତମ ତାଙ୍କୁ ସାଦରେ ଗ୍ରହଣ କରିଛନ୍ତି । ତାଙ୍କ ଉପରେ ପତିତାଭାବର ଯେଉଁ କଳଙ୍କ ଅଜାଡ଼ିହୋଇ ପଡ଼ିଥିଲା, ରାଜପୁତ୍ରଙ୍କଦ୍ୱାରା ସମ୍ମାନିତ ହେବାରୁ ତାହା ଲିଭିଯାଇଛି । ବିଶ୍ୱାମିତ୍ରଙ୍କ ନେତୃତ୍ୱରେ ଋଷିବୃନ୍ଦ ଏବଂ ଅଯୋଧ୍ୟାସମ୍ରାଟ୍ ଦଶରଥଙ୍କ ପ୍ରତିଭୂ, ରାଜପୁତ୍ର ଶ୍ରୀରାମଙ୍କ କର୍ତ୍ତୃକ ଅଭିନନ୍ଦିତ ହୋଇଛନ୍ତି, ଅନ୍ୟ ପକ୍ଷରେ ସ୍ୱୟଂ ରାମଚନ୍ଦ୍ର ପତିତପାବନରୂପେ ଉତ୍ତରିତ ହୋଇଛନ୍ତି ।

## ଜନଶ୍ରୁତିରେ ଅହଲ୍ୟା

ଆମ ଦେଶର ଜନଶ୍ରୁତିରେ ଅହଲ୍ୟାଙ୍କର ଚରିତାବଳୀ ବିଭିନ୍ନ ରୂପ ନେଇଛି । କୌଶିକବିଶ୍ୱାମିତ୍ରଙ୍କ ଉଦ୍ୟମରେ ଉତ୍ତରାପଥ ସହିତ ଦାକ୍ଷିଣାତ୍ୟର ସାଂସ୍କୃତିକ ସମନ୍ୱୟପାଇଁ ଭିତ୍ତିଭୂମି ପଡ଼ିଯାଇଥାଏ । ମହର୍ଷି ଅଗସ୍ତ୍ୟ ବିନ୍ଧ୍ୟାଞ୍ଚଳ ଟପି ଦାକ୍ଷିଣାତ୍ୟରେ ଆର୍ଯ୍ୟସଂସ୍କୃତିର ପ୍ରଚାର ପ୍ରସାର ଘଟାଇଛନ୍ତି । ଅଗସ୍ତ୍ୟ ଓ ବିଶ୍ୱାମିତ୍ରଙ୍କର ବହୁଶିଷ୍ୟ ଦକ୍ଷିଣଭାରତରେ ଆଶ୍ରମ ପ୍ରତିଷ୍ଠା କରିଥାନ୍ତି । ଗୌତମଙ୍କ ଶିଷ୍ୟମାନେ ମଧ୍ୟ ଦକ୍ଷିଣାବର୍ତ୍ତରେ ସୁପ୍ରତିଷ୍ଠ ହୋଇଥିଲେ । ଅହଲ୍ୟାଙ୍କ ଚରିତାବଳୀର ସ୍ପର୍ଶ ପ୍ରଭାବରୁ ଦାକ୍ଷିଣାତ୍ୟ ମଧ୍ୟ ମୁକ୍ତ ନୁହେଁ । କିଷ୍କିନ୍ଧ୍ୟାର ରାଜପୁତ୍ର ବାଳୀ ଓ ସୁଗ୍ରୀବ,

ସଚିବ ହନୁମାନ୍ ଓ ହନୁମାନ୍‌ର ମାତା ଅଞ୍ଜନା- ସମସ୍ତେ ଅହଲ୍ୟାଙ୍କ ଘଟଣାପ୍ରବାହ ସହିତ ସମ୍ବନ୍ଧିତ । ବାଳୀ ଏବଂ ସୁଗ୍ରୀବ ଯଥାକ୍ରମେ ଇନ୍ଦ୍ର ଏବଂ ସୂର୍ଯ୍ୟଙ୍କର କ୍ଷେତ୍ରଜ ସନ୍ତାନଭାବେ ବର୍ଣ୍ଣିତ । 'ବୈଦେହୀଶବିଳାସ'ରେ ସୁଗ୍ରୀବଙ୍କ ପ୍ରତି ରାମଙ୍କର ଉକ୍ତି ପ୍ରଣିଧେୟ -

''ବିଭାବସୁବଂଶେ ଜାତ ଆମ୍ଭର,
ବିଧିରେ ତ ତୁମ୍ଭେ ତାଙ୍କ କୁମର ।।''

ଜନଶ୍ରୁତି ଅନୁସାରେ ବାଳୀ ଓ ସୁଗ୍ରୀବ ଅହଲ୍ୟାଙ୍କ ଗର୍ଭରୁ ଜନ୍ମ ନେଇଥିଲେ । ଅଞ୍ଜନା ମଧ୍ୟ ଅହଲ୍ୟାଙ୍କର କନ୍ୟା । ବାତାତ୍ମଜ ହନୁମାନ୍ ହେଉଛନ୍ତି ଅଞ୍ଜନାଙ୍କର ପୁତ୍ର, ଆଞ୍ଜନେୟ । ସେହି ଦୃଷ୍ଟିରୁ ହନୁମାନ୍ ମଧ୍ୟ ବାଳୀ ଓ ସୁଗ୍ରୀବଙ୍କର ଭାଗିନେୟ । ଏହି ଜନଶ୍ରୁତିଟି ବିମର୍ଶନୀୟ ।

ଅହଲ୍ୟା ଥିଲେ ଅସାମାନ୍ୟା ସୁନ୍ଦରୀ, ଅପ୍ସରାକନ୍ୟା । ରାଜସିକ ଅବଚୈତସ ଆସ୍ତରଣ ଉପରେ ଋଷିପତ୍ନୀହେତୁ ସାତ୍ତ୍ୱିକଭାବର ଚୈତସକଳିକା । ଅନିୟନ୍ତ୍ରଣାନୁଯୋଗ ତପୋବନରେ ତଦୀୟ ସୌନ୍ଦର୍ଯ୍ୟ ସମସ୍ତଙ୍କୁ ମୁଗ୍ଧ କରୁଥାଏ । ଅଙ୍ଗଲତାରେ ତପଃସ୍ନାତ ମାଧୁର୍ଯ୍ୟ ଲହରିତ । ମହର୍ଷି ଗୌତମ ବେଳେବେଳେ ତପସ୍ୟାର ଅତଳ ଜଳଧି ମଧ୍ୟରୁ ଅମୂଲ୍ୟରତ୍ନର ଆହରଣ ଓ ଉପଲବ୍ଧିପାଇଁ ହିମାଦ୍ରିର କେଉଁ ଅଜ୍ଞେୟ ଗୁହାମଧ୍ୟକୁ ଚାଲିଯାନ୍ତି । ବୃକ୍ଷଲତାପୁଷ୍କଳ ଆଶ୍ରମ ମଧ୍ୟଦେଇ ଋତୁଚକ୍ର ଘୂରିଯାଏ । ତରୁଲତା ନିଜର ଅଙ୍ଗସୌଷ୍ଠବରେ ଋତୁଧର୍ମୀ ପୁଷ୍କଲକ୍ଷଣ ଧାରଣ କରନ୍ତି । ଉତ୍ସବମୟ ପରିବେଶରେ ପଶୁପକ୍ଷୀ ସମସ୍ତେ ତନ୍ମୟ ହୁଅନ୍ତି । ଅହଲ୍ୟାର ଋତୁଧର୍ମୀ ଅଙ୍ଗଲତା ପୁଷ୍ପିତ ପଲ୍ଲବିତ ହୁଏ, ପ୍ରିୟତମ ଗୌତମଙ୍କ ପ୍ରତୀକ୍ଷାରେ ସେ କ୍ଷଣେ କ୍ଷଣେ ବାସକସଜ୍ଜା ସାଜେ; କିନ୍ତୁ ତପସ୍ୱିନୀର ଅନୁରାଗତରଙ୍ଗ ଋଷିଙ୍କ ତପସ୍ୟା-କଠିନ ହୃଦୟକୁ କ'ଣ ସ୍ପର୍ଶ କରେ ନାହିଁ ? ସ୍ପର୍ଶ କରେ ନାହିଁ କହିଲେ ଭୁଲ ହେବ । ତାଙ୍କର ହୃଦୟ ସୁକୋମଳ; କିନ୍ତୁ ଅନନ୍ୟ ଭାବସତ୍ତା ମଧ୍ୟରେ ପ୍ରତୀକ୍ଷମାଣ ସୌକୁମାର୍ଯ୍ୟ ଅନୁକ୍ତକଣ୍ଠିତ, କୈଶୋରକଳିକାସଦୃଶ ସମୟକ୍ଷମ ହୋଇଥାଏ । ଅହଲ୍ୟା ନିଜମଧ୍ୟରେ କେତେ ଖୋଜନ୍ତି, କେତେ କାନ୍ଦନ୍ତି; ଆଶ୍ରମ ବୃକ୍ଷଲତାର ଅନ୍ତରାଳ ଦେଇ ପ୍ରିୟତମ ଆସୁଛନ୍ତି - ଭାବି ଭାବି ଶିହରିତ ହୁଅନ୍ତି । ଚୂତବୃକ୍ଷରେ ବଳୟିତ ମାଧବୀଲତାକୁ ସତୃଷ୍ଣ ନୟନରେ ଚାହିଁରହନ୍ତି । ଜ୍ୟୋତ୍ସ୍ନାୟିତ ରଜନୀରେ ଆଶ୍ରମର ଛାୟାପଥକୁ ଚାହିଁଚାହିଁ ଅବସନ୍ନ ହୁଅନ୍ତି । ଜ୍ୟୋତ୍ସ୍ନାପାୟୀ ଚକୋର ପ୍ରତି ବେଳେବେଳେ ସାସୂୟ

ହୋଇଉଠନ୍ତି । ପଦ୍ମପଲାଶ ମଧ୍ୟରେ ଚକ୍ରବାକକୁ ନ ଦେଖି ଚକ୍ରବାକୀ ବିଳପି ଉଠିଲେ ନିଜେ ଚମକି ପଡ଼ନ୍ତି । ପୁଷ୍ପରେଣୁକରମ୍ବିତ ମଳୟସ୍ପର୍ଶରେ ଅଭିମାନିନୀ ହୁଅନ୍ତି । ରାତ୍ରିର ଶେଷଭାଗରେ ଅସତ୍ୟକଣ୍ଠାର୍ପିତବାହୁବନ୍ଧନା ହୋଇ ମନକୁ ମନ କ'ଣ କହି ଉଠନ୍ତି । ତାଙ୍କର ନିଷ୍ପାପ ତନିମା ସତେ ଅବା ଗୌତମଙ୍କ ଚିନ୍ତାରେ ମୂର୍ଚ୍ଛିତ ଲତାସଦୃଶ । କିନ୍ତୁ ହାୟ, ମହର୍ଷି ତପସ୍ୟାର କେଉଁ ଅତଳାତଳ ସୀମାରେ; ଶତ ଚେଷ୍ଟାକଲେ ମଧ୍ୟ କାମଧୁରା ଅହଲ୍ୟା ତାହାଙ୍କୁ ସ୍ପର୍ଶ କରିପାରୁ ନାହାନ୍ତି; ବଞ୍ଚିତ ହୋଇଯାଉଛନ୍ତି ।

ଶୁଦ୍ଧସ୍ନାତା ଅହଲ୍ୟା ସେଦିନ ପ୍ରତ୍ୟୁଷରୁ ଅସ୍ତଗାମୀ ଚନ୍ଦ୍ରଙ୍କୁ ଚାହିଁଥାନ୍ତି । ଦିଗ୍‌ବିଦିଗ୍ ସଂପୂର୍ଣ୍ଣ ପରିଷ୍କାର ହୋଇ ନ ଥାଏ । ତାଙ୍କର କାମିନୀହୃଦୟ ଗୌତମଙ୍କ ଭାବରେ ମୂର୍ଚ୍ଛିତ । ଲତାନ୍ତରିତ ଛାୟାପଥରୁ ଧୀର ପଦକ୍ଷେପରେ ଅସ୍ପଷ୍ଟ ତପସ୍ୱୀ ମୂର୍ତ୍ତିଟିଏ ସମୀପବର୍ତ୍ତୀ ହେଉଥାନ୍ତି । ଅବିକଳ ଗୌତମଙ୍କ ସଦୃଶ । ଅହଲ୍ୟାଙ୍କ ମନରେ ଉଲ୍ଲାସ ଖେଳିଗଲା । ହଁ, ଗୌତମ ! ଜଟାକଳାପ ମଧ୍ୟରେ ସୌମ୍ୟ ମୁଖଟି ଭାସିଉଠୁଛି । କିନ୍ତୁ ପଦନ୍ୟାସରେ ଶଙ୍କା କାହିଁକି ?

ମୁନିବେଶଧାରୀ ଇନ୍ଦ୍ର ଅହଲ୍ୟାଙ୍କ ନିକଟରେ ଉପସ୍ଥିତ ହେଲେ । ତନୁଶ୍ରୀଙ୍କର ଅପ୍ସରାଞ୍ଚିତ ତନିମା ଦେବରାଜଙ୍କୁ ପ୍ରଲୁବ୍ଧ କରୁଥାଏ । ଛଦ୍ମବେଶରେ ଅହଲ୍ୟାଙ୍କୁ ଉପଭୋଗ କରିବାର ବାସନା ଆଶ୍ରମର ମର୍ଯ୍ୟାଦାକୁ ଉଲ୍ଲଙ୍ଘନ କରିଛି, କିନ୍ତୁ ଦେବରାଜ ସେଥିପ୍ରତି ଦୃଷ୍ଟି ଦେଇ ନାହାନ୍ତି । ପୂର୍ବାନୁରାଗିଣୀ ଅହଲ୍ୟାଙ୍କ ହୃଦୟରେ ଉତ୍କଣ୍ଠା ଓ ଆବେଗ ମଧ୍ୟରେ ସେ ଇନ୍ଦ୍ରଙ୍କର ଶଙ୍କିତ ହୃଦୟକୁ ବୁଝି ମଧ୍ୟ ବୁଝି ପାରି ନାହାନ୍ତି । ତାହାହିଁ ଉତ୍‌କା କାମିନୀର ଆଚ୍ଛନ୍ନତା । କିନ୍ତୁ ଦେବରାଜଙ୍କ ଶଙ୍କିତ ଅନୁରାଗ ଗୌତମଙ୍କ ନିଃସର୍ଗ ଅନୁରାଗଠାରୁ ଭିନ୍ନ । ଅହଲ୍ୟା ଏହି ଭିନ୍ନତାକୁ ବୁଝିଲାବେଳକୁ ନିଜକୁ ସମର୍ପଣ କରିସାରିଥିଲେ ।

ମନମଧ୍ୟରେ ଆକୁଳ ଦ୍ୱିଧା । ସ୍ୱୟଂ ଦେବରାଜ ଇନ୍ଦ୍ର ସାବେଗ ଅନୁନୟରେ କ୍ଷମା ମାଗି ନେଉଛନ୍ତି । ଋଷିପତ୍ନୀ ନିର୍ବାକ୍ । ନିଜମଧ୍ୟରେ ଏହି ଦୃଷ୍କୃତିକୁ ସହ୍ୟକରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ଅଭିଶାପ ଦେବେ ? କୋମଳହୃଦୟା ଅହଲ୍ୟା ତାହା ମଧ୍ୟ କରିପାରି ନାହାନ୍ତି । କିଛିଦିନ ପରେ..., ମହର୍ଷି ଆଶ୍ରମକୁ ଫେରିଆସିଛନ୍ତି । କାତରହୃଦୟା ଅହଲ୍ୟା ନିଜର ସ୍ୱାଭାବିକତା ହରାଇ ଥାଆନ୍ତି । ତାଙ୍କର ଦୁଃଖାଭିଭୂତ ଭିନ୍ନତାକୁ ଗୌତମ ନାରୀସୁଲଭ ଅଭିମାନରୂପେ ଭାବି ନେଉଛନ୍ତି । ଯଥାସମୟରେ

ନିଷିକ୍ତା ଅହଲ୍ୟା ଜନ୍ମଦେଲେ କ୍ଷେତ୍ରଜ ସନ୍ତାନକୁ । ଶରୀର ପୀତବର୍ଣ୍ଣ ଓ ଲୋମଶ । ମୁନି ନାମକରଣ କଲେ 'ବାଳୀ' ।

ଅହଲ୍ୟାଙ୍କ ନାରୀଜୀବନରେ ଅନ୍ୟ ଏକ ଦୁଃଖଦ [?] ପର୍ଯ୍ୟାୟ । ମହର୍ଷି କେଉଁ ଅଜ୍ଞାତଗୁହାରେ ତପୋମଗ୍ନ । ଆଶ୍ରମରେ ଏକାକିନୀ ତନ୍ୱୀ ଅହଲ୍ୟା । କୁଲ୍ୟାଜଳରେ ଶୁଦ୍ଧସ୍ନାନ ସାରି ହେମନ୍ତସକାଳର ନବୋଦିତ ସୂର୍ଯ୍ୟଙ୍କର ବର୍ତ୍ତୁଳ ମୂର୍ତ୍ତିଙ୍କୁ ହରିଦ୍ରାପଦ୍ମରେ ବନ୍ଦନା କଲେ । ସହସ୍ରାଂଶୁଙ୍କର ସୁଖସ୍ପର୍ଶ କିରଣ ସ୍ନାନସିକ୍ତା ଋଷିପତ୍ନୀଙ୍କର ପ୍ରତ୍ୟେକ ଲୋମକୂପ ମଧ୍ୟଦେଇ ଶରୀର ଓ ମନକୁ ମୁଗ୍ଧ କରୁଥାଏ । ଉନ୍ମୁକ୍ତ ନାଭିପଦ୍ମ ସତେଅବା ରଶ୍ମିସଂପାତରେ ସ୍ପନ୍ଦିତ ହେଉଥାଏ । ହୃଦୟରେ କାମିନୀସୁଲଭ ପୁଲକ । ଶରୀର ରୋମାଞ୍ଚିତ । ଅହଲ୍ୟା ଲକ୍ଷ୍ୟକଲେ, - ସୂର୍ଯ୍ୟମଣ୍ଡଳରୁ କାନ୍ତିମୟ ଦିବ୍ୟପୁରୁଷ ଓହ୍ଲାଇ ଆସୁଛନ୍ତି । କର୍ଣ୍ଣାବତଂସ ମକରକୁଣ୍ଡଳ, ମସ୍ତକରେ ହିରଣ୍ମୟ ମୁକୁଟ । ରକ୍ତିମ ଅନୁରାଗ ବିଞ୍ଚିଦେଇ କହିଲେ, ''ପ୍ରିୟେ, ତୁମର ଅନନ୍ୟପ୍ରଣୟ ଲାଭକରି ମୁଁ ମୁଗ୍ଧ । ମୋର ତେଜଃସିକ୍ତ, କିରଣସମ୍ପାତରେ ତୁମେ ନିଷିକ୍ତା । ଆଜିର ଏହି ହେମନ୍ତ ପ୍ରଭାତ ଆମର ସ୍ମରଣୀୟ ହେଉ ।'' ଅହଲ୍ୟାର ହୃଦୟ ଥରିଉଠିଲା । ଶଙ୍କିତ ଚିତ୍ତରେ ଆଶ୍ରମକୁ ଫେରିଲେ । ନାରୀହୃଦୟର ଏହି ସଂଗୋପିତ ବେଦନା କାହାକୁ ବା କହିବେ ? ସ୍ୱଭାବଲଜ୍ଜାହେତୁ ନାରୀ ବହୁକଥା ପ୍ରକାଶ କରିପାରେ ନାହିଁ । ତା'ର ବେଦନା ଅବ୍ୟକ୍ତ, ଦୁଃଖ ଅନ୍ତରୀଣ । ସନ୍ତାପନ ମଧ୍ୟରେ ସେ ସର୍ବଂସହା । ଯଥାସମୟରେ ଗୌତମ ଆଶ୍ରମକୁ ଫେରିଆସିଛନ୍ତି । ଅହଲ୍ୟା ପଦବନ୍ଦନା କଲେ । କିନ୍ତୁ ଏ କ'ଣ ? ଋଷିପତ୍ନୀଙ୍କ ମନରେ ପ୍ରଚ୍ଛନ୍ନ କାତରତା କାହିଁକି ? ଗୌତମ ବାରମ୍ବାର ତଙ୍କୁ ବିରହକାତରା କରି ତପସ୍ୟା ଉଦ୍ଦେଶ୍ୟରେ ଚାଲିଯାଉଛନ୍ତି ବୋଲି ? ନା', ସେ ଆଉ ଏପରି କଷ୍ଟ ଦେଇ ଯିବେ ନାହିଁ । ଅହଲ୍ୟାର ନାରୀତ୍ୱ ଓ କାମିନୀହୃଦୟକୁ ସମ୍ମାନ ଜଣାଇବେ । - ତପସ୍ୱିନୀ ଅହଲ୍ୟାର ବେଦନାକୁ ବୋଧହୁଏ ଗୌତମ ଆଜି ପ୍ରଥମଥର ପାଇଁ ଅନୁଭବ କଲେ ।

ଯଥାସମୟରେ ସନ୍ତାନଟିଏ ଜନ୍ମ ନେଇଛି, ବେଶ୍ ସୁନ୍ଦର, ପୀତତନୁ, ଶୋଭନୀୟ ଗ୍ରୀବା । ନାମ ରଖିଲେ **ସୁଗ୍ରୀବ** ।... ସନ୍ତାପମୟ ଗ୍ରୀଷ୍ମଋତୁ । ଋଷି ନଦୀସ୍ନାନକୁ ଯାଉଥାନ୍ତି । ସାଥିରେ କନ୍ୟା ସୁକୁମାରୀ ଅଞ୍ଜନା । ଦୁଇଜଣ ଶିଶୁପୁତ୍ର ବାଳୀ ଓ ସୁଗ୍ରୀବ । ଅଞ୍ଜନା ସେତେବେଳକୁ ଶୈଶବ ଅତିକ୍ରମ କରି କୈଶୋରରେ ପାଦ ଦେଇଥାଏ । ମୂଳରୁ ନିର୍ଲିପ୍ତମନାଃ । ପ୍ରକୃତିର ଅନ୍ତରୀଣ ଉଲ୍ଲାସରେ ବହୁସମୟ

ମଜ୍ଜିରହେ । ପ୍ରକୃତି ତାହାକୁ କେବେ ବେଦନା ଦେଇ ନାହିଁ । କେବେ ମଧ୍ୟ ଉଦ୍ଦୀପନା ଆଣେ ନାହିଁ । ସତେଅବା ଶାଶ୍ୱତମାତୃକାପରି ଶାନ୍ତିର ନିଳୟ । ମା'ଙ୍କ ଜୀବନଧାରାରୁ ସଂପୂର୍ଣ୍ଣ ଭିନ୍ନ । ତପସ୍ୟାର ବିମଳମୂର୍ତ୍ତି । ନିଷ୍କମ୍ପ ଦୀପଶିଖା । କିନ୍ତୁ ମା'ଙ୍କ ଜୀବନର ବିଡ଼ମ୍ବନାକୁ ସେ ଅସ୍ପଷ୍ଟଭାବରେ କିଛିଟା ବୁଝିଛି । ବାଲୁକାମାର୍ଗ ଉତ୍ତପ୍ତ । ଶିଶୁପୁତ୍ରଦ୍ୱୟ ଚାଲିପାରୁ ନାହାନ୍ତି । ମହର୍ଷି ତାଙ୍କୁ କାନ୍ଧରେ ବସାଇ ନେଉଥାନ୍ତି । ଅଞ୍ଜନା ମଧ୍ୟ ଚାଲିପାରୁ ନ ଥାଏ । ଆଜି ଅହେତୁକ ଭାବରେ ତା' ମନରେ ଅଧିକାରବୋଧ ଜାଗିଉଠିଲା । ପିତାଙ୍କ କାନ୍ଧରେ ବସି ଯିବାକୁ ଜିଦ୍ କଲା । କିନ୍ତୁ ଗୌତମ ଦୁଇ ଶିଶୁପୁତ୍ରଙ୍କୁ କାନ୍ଧରେ ବସାଇଥାଆନ୍ତି । ଅଞ୍ଜନା ତ ଟିକିଏ ବଡ଼ ହେଲାଣି, ହୁଏତ ଚାଲିପାରିବ । ଉନ୍ମାଦନାରେ ଅଞ୍ଜନା କହିଉଠିଲା,- ''ମୁଁ ଆପଣଙ୍କ କନ୍ୟା ହୋଇ ଚାଲିଚାଲି ଯିବି, ଆଉ ଏହି ଦୁଇଜଣ ଆପଣଙ୍କର ସନ୍ତାନ ନ ହୋଇ ମଧ୍ୟ କାନ୍ଧରେ ବସି ଯିବେ ?'' - ଝିଅର ଏହି ଦାରୁଣ ବାକ୍ୟରେ ଗୌତମ ଉତ୍କ୍ଷିପ୍ତ ହୋଇଉଠିଲେ । ନଦୀର ଜଳମଧ୍ୟକୁ ପୁତ୍ରଦ୍ୱୟଙ୍କୁ ଫିଙ୍ଗିଦେଇ କହିଲେ - ''ଯଦି ତୁମେ ଦୁହେଁ ମୋର ଔରସସନ୍ତାନ ହୋଇଥିବ ନିଜ ରୂପରେ ଫେରିଆସିବ, ଅନ୍ୟଥା ତୁମର ମୁଖ ବାନରସଦୃଶ ହୋଇଯିବ ।'' ହାୟ, ଦୁଇ ଶିଶୁପୁତ୍ର ବାନରସଦୃଶ ହୋଇ କୂଳକୁ ଆସିଲେ ।

ଗୌତମ କ୍ରୋଧମୂର୍ଚ୍ଛିତ ହୋଇଗଲେ । ଉତ୍ଶିଖ ପିଙ୍ଗଳଜଟା, ପ୍ଲୁତ ପଦଗତିରେ ଧୂମକେତୁର ଛାୟା । ଧରିତ୍ରୀ ଥରି ଉଠୁଥାଏ, ସତେ ଅବା ବିଦୀର୍ଣ୍ଣ ହୋଇଯିବ । ଗୌତମଙ୍କର ଏହି ରୋଷାୟିତ ମୂର୍ତ୍ତି ଦେଖି ଅହଲ୍ୟା ଥରିଉଠିଲେ; ତାଙ୍କ ସହିତ ଥରିଉଠିଲେ ଆଶ୍ରମର ତରୁଲତା, ପଶୁପକ୍ଷିଗଣ । ଗୌତମଙ୍କ ଅଭିଶାପରେ ଅହଲ୍ୟା ହୋଇଗଲେ ପାଷାଣୀ; ପାଷାଣପରି ନିଃସ୍ପନ୍ଦ, ନିର୍ବାକ୍ ଓ ନିଶ୍ଚଳ । ମହର୍ଷି ତତ୍କ୍ଷଣାତ୍ ଆଶ୍ରମ ତ୍ୟାଗକରି ଚାଲିଗଲେ । ପୂର୍ବରୁ ରାଜର୍ଷିଜନକଙ୍କ ଆନୁକୂଲ୍ୟରେ ଜ୍ୟେଷ୍ଠସନ୍ତାନ ଶତାନନ୍ଦ ମିଥିଳାର ରାଜସଭାରେ ସ୍ଥାନ ଗ୍ରହଣ କରିଥାନ୍ତି । ଦକ୍ଷିଣାପଥର ଶିଷ୍ୟମାନେ ବାଲୀ ଏବଂ ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାରାଜ୍ୟକୁ ନେଇଗଲେ । ଆଉ ଅଞ୍ଜନା; - ବିଚାରୀ ସରଳହୃଦୟା । ଶୈଶବ ଏବେମାତ୍ର ଅତିକ୍ରାନ୍ତ ହୋଇଛି । ତାହା କଥାର ଏପରି ପରିଣାମ ହେବ; ସେ ଆଦୌ ଭାବିପାରି ନାହିଁ । ଅତି କରୁଣଭାବରେ କାନ୍ଦୁଥାଏ । ଅହଲ୍ୟା ପଶ୍ଚାତ୍ତାପରେ ପ୍ରସ୍ତର ହୋଇଆସୁଥାନ୍ତି । ଝିଅ ଉପରେ ଦୃଷ୍ଟି ପଡ଼ିଲା । ଅନାୟାତ୍ତ ଘଟଣାରେ ସେ ଆଜି ପତିତା, କଳଙ୍କିନୀ; ଦୁଃସହ ଅପବାଦପସରା ସତେଅବା ଅଜାଡ଼ି ହୋଇପଡ଼ିଲା । କ୍ରୋଧରେ ଝିଅକୁ କହିଉଠିଲେ; -''ମୁଁ

ନିରପରାଧା, କିନ୍ତୁ ଅନାୟତ୍ତ ଘଟଣାରେ ମତେ କଳଙ୍କିନୀ କରିଦେଲୁ; ମୋର ଅଭିଶପ୍ତ ପୁତ୍ରଦ୍ୱୟ ବାନରମୁଖ ହୋଇଗଲେ । ମୋର ଅଭିଶାପ - ତୁ ମଧ୍ୟ କ୍ଷେତ୍ରଜସନ୍ତାନର ଜନନୀ ହେବୁ, ତୋର ପୁତ୍ର ବାନରମୁଖ ହେବ'' ।

ଏହି ଦୁଃଖଦ ପରିବେଶରେ ଗୌତମଙ୍କ ଆଶ୍ରମ ଛିନ୍ନଭିନ୍ନ ହୋଇଯାଇଛି । ବହୁବର୍ଷ ପରେ କାରୁଣିକ ରାମଚନ୍ଦ୍ର ସେହି ପରିତ୍ୟକ୍ତ ଆଶ୍ରମରେ ପଦନ୍ୟାସ କରିଛନ୍ତି; ଆଶ୍ରମ ପୁନର୍ଜୀବନ ଲାଭକରିଛି । ଅହଲ୍ୟା ଶ୍ରୀରାମଙ୍କ ସ୍ପର୍ଶରେ ପବିତ୍ରୀକୃତ ହୋଇ ଶାଶ୍ୱତୀ କନ୍ୟାରୂପେ ବନ୍ଦିତା ହୋଇଛନ୍ତି । ମହର୍ଷି ଗୌତମ ତାଙ୍କୁ ପତ୍ନୀଭାବରେ ସାଦର ଗ୍ରହଣ କରିଛନ୍ତି । ରାମଚନ୍ଦ୍ର ପତିତପାବନରୂପରେ ଉତ୍ତରିତ ହୋଇଛନ୍ତି ।

## ଅହଲ୍ୟା ଓ ଉର୍ବଶୀ

ଅହଲ୍ୟା ଓ ଉର୍ବଶୀଙ୍କ ଚରିତାବଳୀରେ ଲାକ୍ଷଣିକ ସାମଞ୍ଜସ୍ୟ ରହିଛି । ଉଭୟେ ଅପ୍ସରା-କନ୍ୟା । ଋଗ୍‌ବେଦଠାରୁ ଆରମ୍ଭକରି ପୁରାଣ-ଇତିହାସ ଓ ସାହିତ୍ୟକୃତି ମଧ୍ୟଦେଇ ଉର୍ବଶୀଚରିତ ବିଭିନ୍ନ ଭାବରେ ବିବର୍ତ୍ତିତ ହୋଇ ରୂପକଳ୍ପର ବ୍ୟଞ୍ଜନା ଲାଭ କରିଛି । ବୈଦିକ-ଋଚାମଧ୍ୟରେ ପ୍ରସଙ୍ଗବିହୀନ ପୁରୁରବା-ଉର୍ବଶୀଙ୍କର ସଂଳାପ ଦେଖିବାକୁ ମିଳେ । ସେହି ଗାଥାର ପୂର୍ବାପର ପ୍ରସଙ୍ଗ **ଶତପଥ-ବ୍ରାହ୍ମଣ** ଗ୍ରନ୍ଥରେ ନିହିତ । ଉର୍ବଶୀ ଅପ୍ସରାଶ୍ରେଷ୍ଠା; ଇନ୍ଦ୍ରଙ୍କ ସଭାରେ ଶୋଭା-କଳ୍ପ-ଲତିକା । ସେତେବେଳେ ଐଳପୁରୁରବା ମର୍ତ୍ତ୍ୟର ସମ୍ରାଟ୍ । ଦେବରାଜ ଇନ୍ଦ୍ର ଓ ପୁରୁରବାଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ-ସମ୍ବନ୍ଧ ଥାଏ । ସ୍ୱର୍ଗରାଜ୍ୟର ସୁରକ୍ଷାପାଇଁ ଇନ୍ଦ୍ର ପୁରୁରବାଙ୍କର ସାହାଯ୍ୟ ଲୋଡ଼ନ୍ତି । ତାଙ୍କର ବୀରତ୍ୱ, କମନୀୟ ରୂପକାନ୍ତି, ଦାକ୍ଷିଣ୍ୟ - ଉର୍ବଶୀଙ୍କର ହୃଦୟକୁ ସ୍ପର୍ଶ କରୁଥାଏ । ଏକଦା ଅମରାବତୀରେ ସଙ୍ଗୀତର ମନୋରମ ଆସର । ନୃତ୍ୟକୁଶଳା ଉର୍ବଶୀ ନୃତ୍ୟ ପରିବେଷଣ କରୁଥାନ୍ତି । ପୁରୁରବା ମଧ୍ୟ ସେଠାରେ ଉପସ୍ଥିତ ଥାଆନ୍ତି । ତାଙ୍କପ୍ରତି ଆସକ୍ତିହେତୁ ଉର୍ବଶୀଙ୍କ ନୃତ୍ୟ ଛନ୍ଦରେ ତ୍ରୁଟି ଲକ୍ଷିତ ହେଲା । ଏଥିରେ ନୃତ୍ୟଗୁରୁ **ତୁମ୍ବୁରୁ** ଏବଂ **ଭରତ** କ୍ରୋଧାନ୍ୱିତ ହେଲେ । ମର୍ତ୍ତ୍ୟବାସୀ ପୁରୁରବାଙ୍କ ପ୍ରତି ଦେବାଙ୍ଗନାଙ୍କର୍ ଏହି ଆସକ୍ତିକୁ ଲକ୍ଷ୍ୟକରି ବ୍ରହ୍ମା ଅଭିଶାପ ଦେଲେ,- ''ସ୍ୱର୍ଗକନ୍ୟା ହୋଇ ତୁମେ ମର୍ତ୍ତ୍ୟବାସୀ ପ୍ରତି ଆସକ୍ତି ପ୍ରକାଶ କଲ, ତେଣୁ ମର୍ତ୍ତ୍ୟଲୋକକୁ ପତିତ ହୁଅ'' । ସ୍ୱର୍ଗଚ୍ୟୁତା ଉର୍ବଶୀ ଅଗତ୍ୟା ଗନ୍ଧର୍ବମଣ୍ଡଳଦେଇ ମର୍ତ୍ତ୍ୟଲୋକରେ ଭୂପତିତ ହେଲେ । ଗନ୍ଧମାଦନ ପର୍ବତରେ ବିଚରଣ କରୁଥିବା ପୁରୁରବା; ଉର୍ବଶୀଙ୍କୁ ଦେଖି ଅନ୍ୟୋନ୍ୟପ୍ରଣୟରେ ଆବଦ୍ଧ ହେଲେ । ସେମାନଙ୍କର

ବିବାହ ଗାନ୍ଧର୍ବବିଧିସମ୍ମତ ଥିଲା । ବିଧିଅନୁସାରେ ଏହି ବିବାହ ସର୍ତ୍ତମୂଳକ, ସମୟଧର୍ମୀ । ଉର୍ବଶୀ 'ପୁରୁରବାଙ୍କର ନଗ୍ନରୂପ ଆଦୌ ଦେଖିବେ ନାହିଁ,' ଏହାହିଁ ସର୍ତ୍ତ ଥିଲା । ତେଣେ ଉର୍ବଶୀଙ୍କ ଅନୁପସ୍ଥିତି ସ୍ୱର୍ଗପୁରୀକୁ ଶ୍ରୀହୀନ କରି ଦେଇଥାଏ । ଦେବତା ଓ ଗନ୍ଧର୍ବମାନେ ଉର୍ବଶୀଙ୍କର ସ୍ୱର୍ଗପୁରୀକୁ ପ୍ରତ୍ୟାବର୍ତ୍ତନ ବିଷୟ ସର୍ବଦା ଚିନ୍ତାକରୁଥାନ୍ତି । ଏକଦା ଉର୍ବଶୀଙ୍କର ଶୟନ କକ୍ଷରେ ଗନ୍ଧର୍ବମାନେ ପ୍ରବେଶକରି ସେଠାରେ ପାଳିତ ପୁତ୍ରକରୂପେ ଥିବା ମେଷଶିଶୁଦୁଇଟିକୁ ଅପହରଣ କରିନେଲେ । ସେମାନଙ୍କ ଆର୍ତ୍ତନାଦରେ ଉର୍ବଶୀ ଚିତ୍କାର କରିଉଠିଲେ । ସେତେବେଳେ ପୁରୁରବା ଉଲଗ୍ନ ଅବସ୍ଥାରେ ଶୟନ କରିଥାନ୍ତି । ଉର୍ବଶୀ କହିଲେ, ''ଏହି ସ୍ଥାନ କ'ଣ ଏପରି ବୀରଶୂନ୍ୟ, ମହାରାଜ କ'ଣ ଏତେ କ୍ଳୀବ, ହୀନବୀର୍ଯ୍ୟ; ମୋର ପାଳିତପୁତ୍ରଙ୍କୁ କିଏ ନେଇଯାଉଛି, ଅଥଚ ସେ ପ୍ରତିରୋଧ କରିପାରୁ ନାହାନ୍ତି ?'' ମହାରାଜ ପୁରୁରବାଙ୍କ ପୌରୁଷ ଆହତ ହେବାରୁ ସେ ସେହି ଉଲଗ୍ନ ଅବସ୍ଥାରେ ଅନ୍ଧକାର ମଧ୍ୟରେ ଶରସନ୍ଧାନ କରିବାକୁ ଉଦ୍ୟତ ହେଲେ । ଠିକ୍ ସେହି ସମୟରେ ଗନ୍ଧର୍ବମାନେ ଆକାଶରେ ବିଦ୍ୟୁତ୍ ଝଲସାଇ ଦେଲେ । ଉର୍ବଶୀ ପୁରୁରବାଙ୍କ ନଗ୍ନରୂପକୁ ଦେଖିବାକୁ ପାଇଲେ । ତଦ୍ୱାରା ସେମାନଙ୍କ ବିବାହ-ସର୍ତ୍ତ ଭଙ୍ଗହେଲା ଏବଂ ଉର୍ବଶୀ ତତ୍‌କ୍ଷଣାତ୍ ପୁରୁରବାଙ୍କଠାରୁ ବିଦାୟନେଇ ସ୍ୱର୍ଗପୁରକୁ ଯିବାପାଇଁ ଉଦ୍ୟତ ହେଲେ । ଆସନ୍ନ ବିୟୋଗରେ ମହାରାଜ ବିଳାପ କରିଉଠିଲେ । କିନ୍ତୁ ଉର୍ବଶୀ ତାଙ୍କର ଅନୁନୟ ନ ଶୁଣି ଆକାଶମାର୍ଗରେ ଅନ୍ତର୍ହିତ ହୋଇଗଲେ । ତଦବଧି ପୁରୁରବା ପାଗଳପ୍ରାୟ ଉର୍ବଶୀଙ୍କୁ ଗନ୍ଧମାଦନ, ମେରୁପୃଷ୍ଠ, ହିମାଳୟର ବିଭିନ୍ନ ଶୃଙ୍ଗପ୍ରଦେଶ - ସର୍ବତ୍ର ଖୋଜି ଚାଲିଛନ୍ତି । ତାଙ୍କର ବ୍ୟଥାତୁର ବିଳାପ ପ୍ରବଚନୀୟ ହୋଇଛି । ଏକଦା ମାନସସରୋବରର ରାଜହଂସୀମାନଙ୍କ ମେଳରେ ଉର୍ବଶୀଙ୍କୁ ଖେଳୁଥିବାର ଦେଖି ମହାରାଜ ଆତୁର ଚିତ୍କାରକରି କହି ଉଠିଲେ -

''ହୟେ ଜାୟେ ମନସା ତିଷ୍ଠ ଘୋରେ
ବାଚାଂସିମିଶ୍ରା କୃଣୁବାବ ହୈ ନୁ...... [ ଋଗ୍ - ୧୦ମ ମଣ୍ଡଳ ]

''ହେ ନିଷ୍ଠୁର ଜାୟା, ଟିକେ ରହିଯାଇ ମୋ କଥା ଶୁଣ; ମୋ କଥାର ପ୍ରତିବଚନ ଦିଅ । ମୋ ମନର ବେଦନା ବୁଝିବାକୁ ଚେଷ୍ଟାକର । ତୁମର ଅଦର୍ଶନରେ ମୁଁ ସମଗ୍ର ଜମ୍ବୁଦ୍ୱୀପରେ ପାଗଳପରି ଖୋଜି ଚାଲିଛି । ନ ପାଇଲେ ମୁଁ ଜୀବନ ହରାଇବି... ।''

ଉର୍ବଶୀ ଯେଉଁ ଉତ୍ତର ଦେଇଥିଲେ, ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ''ହେ ମର୍ତ୍ତ୍ୟଭୂମିର ମଣିଷ, ମହାରାଜ ପୁରୁରବା, ଆପଣ ମୋତେ ପାଇବେ ନାହିଁ। କୌଣସି ମର୍ତ୍ତ୍ୟବାସୀ ପକ୍ଷରେ ଦେବାଙ୍ଗନାଙ୍କୁ ପାଇବାର ଆଶା ବୃଥା । ତୁମେ ଅଗ୍ନିବିଦ୍ୟାରେ ନିଷ୍ଣାତ ନୁହଁ । ହେ ପୁରୁଷଶ୍ରେଷ୍ଠ, ମୋତେ ଭୁଲିଯାଅ । ଆମ୍ଭମାନଙ୍କ ହୃଦୟ ବୃକ-ସିଂହପରି କଠୋର । ମୁଁ ତୁମର ସନ୍ତାନକୁ ଧାରଣ କରିଛି । ଯଥାସମୟରେ ତୁମ ନିକଟରେ ପହଞ୍ଚାଇଦେବି ।'' କାତର ପୁରୁରବା ପୁନଃପୁନଃ ଅନୁନୟ କରି କହିଲେ, ''ହେ ପ୍ରିୟେ, ପ୍ରିୟତମେ, ତୁମର ବିରହ ମୋ ପକ୍ଷରେ ଅସହ୍ୟ । ମୁଁ ଏହି ପର୍ବତଶୃଙ୍ଗରୁ ଲମ୍ଫଦେଇ ଆତ୍ମବିସର୍ଜନ କରିବି । ମୋର ଅନୁରାଗ ପ୍ରତି ସଦୟ ହୁଅ ।'' ଉର୍ବଶୀ - ''ମହାରାଜ ! ନାରୀ, ବିଶେଷ କରି ଦେବାଙ୍ଗନାର ହୃଦୟ ବଜ୍ରସମ କଠିନ । ମୁଁ ଦୁଃଖିତ, ଆପଣଙ୍କ ଅନୁନୟ ରକ୍ଷା କରିପାରୁ ନାହିଁ । ଆପଣ ଅଗ୍ନିଚୟନପୂର୍ବକ ଗନ୍ଧର୍ବତନୁ ଲାଭ କରନ୍ତୁ । ମୁଁ ବର୍ଷାନ୍ତରେ ଥରେ ମାତ୍ର ଆପଣଙ୍କ ସହିତ ମିଳିତ ହେବି । ଏବେ ଆମର ସମୟ ଧର୍ମ ଲଙ୍ଘିତ ହୋଇଛି । ଆପଣଙ୍କର କୁଶଳ ହେଉ । ମୋ ଗର୍ଭଜାତ ଆପଣଙ୍କ ସନ୍ତାନକୁ ଯଥାସମୟରେ ପାଇବେ ।''... ଏହିପରି ଆଶ୍ୱାସନା ଦେଇ ଦେବାଙ୍ଗନା ରାଜହଂସୀମେଳରେ ଅନ୍ତର୍ହିତ ହୋଇଗଲେ । ପୁରୁରବା ଦେବଲୋକରୁ ଜ୍ଞାନାତ୍ମକ ଅଗ୍ନିବିଦ୍ୟାକୁ ମର୍ତ୍ତ୍ୟକୁ ଆଣିଥିଲେ ଏବଂ ସେହି ବିଦ୍ୟାଦ୍ୱାରା ଗନ୍ଧର୍ବତନୁ ପ୍ରାପ୍ତ ହୋଇଥିଲେ । ଅପେକ୍ଷମାଣ ପୁରୁରବା ବର୍ଷାନ୍ତ ତିଥିରେ ଉର୍ବଶୀଙ୍କ ସହିତ ମିଳିତ ହେବାର ସୁଯୋଗ ଲାଭ କରିଥିଲେ । ପୁରୁରବା ବିପ୍ରଲବ୍ଧନାୟକର ସତେ ଅବା ରୂପକଳ୍ପ ।

ପରବର୍ତ୍ତୀ ସାହିତ୍ୟରେ ଏହି ଆଖ୍ୟାନର ବିବର୍ତ୍ତନ ଘଟିଛି । କାଳିଦାସଙ୍କ **ବିକ୍ରମୋର୍ବଶୀୟମ୍** ନାଟକରେ ବର୍ଣ୍ଣିତ ଅଛି ''ସନ୍ତାନଲାଭ ପର୍ଯ୍ୟନ୍ତ ଉର୍ବଶୀ ପୁରୁରବାଙ୍କ ସହିତ ରହିବେ, ପୁତ୍ରମୁଖ ଦର୍ଶନ ପରେ ଉର୍ବଶୀ ନିଜ ରାଜ୍ୟକୁ ଚାଲିଯିବେ''- ଏହା ସମୟଧର୍ମୀ ସର୍ତ୍ତ ଥିଲା । ଏକଦା ଯୁଗଳଦମ୍ପତି ବନବିହରଣ କରୁଥାନ୍ତି । କୌଣସି ବିଦ୍ୟାଧରୀଙ୍କ ପ୍ରତି ମହାରାଜଙ୍କ ଦୃଷ୍ଟି ଆକର୍ଷିତ ହୋଇଗଲା । ସେ ସତୃଷ୍ଣନୟନରେ ସେହି ସୁନ୍ଦରୀର ରୂପଲାବଣ୍ୟକୁ ଚାହିଁଥାନ୍ତି । ଏଥିରେ ଉର୍ବଶୀ ଅଭିମାନରୁଷ୍ଟା ହୋଇ ନିକଟସ୍ଥ ଲତାକୁଞ୍ଜ ମଧ୍ୟରେ ଲୁଚିଯିବାର ଉପକ୍ରମ କଲେ । ହାୟ, ସେହି ଲତାକୁଞ୍ଜ ଥିଲା କୁମାର **କାର୍ତ୍ତିକେୟଙ୍କର** ତପୋବନ । କୌଣସି ନାରୀ ସେହି ବନଦେଶରେ ପ୍ରବେଶ କଲେ ଲତାରେ ରୂପାନ୍ତରିତ ହୋଇଯାଏ । ଉର୍ବଶୀଙ୍କର ଅବସ୍ଥା ତାହାହିଁ ହେଲା । ପରକ୍ଷଣରେ ପୁରୁରବା ଉର୍ବଶୀଙ୍କୁ ନ ଦେଖି ଆକୁଳଚିତ୍ତରେ

ଖୋଜିଛନ୍ତି । ପ୍ରତ୍ୟେକ ବୃକ୍ଷଲତା, ପଶୁପକ୍ଷୀ- ସମସ୍ତଙ୍କୁ ପ୍ରିୟାର ସମ୍ବାଦ ପଚାରୁଥାନ୍ତି । ବିରହୀ ପୁରୁରବାଙ୍କର କରୁଣବିଳାପ ପ୍ରବଚନୀୟ ହୋଇଯାଇଛି ।

ଉର୍ବଶୀ ଓ ପୁରୁରବାଙ୍କର ଏହି ବିରହ ଏବଂ ପୁରୁରବାଙ୍କର ଆକୁଳ ଅନ୍ୱେଷଣକୁ ଆଲୋଚକମାନେ ସ୍ୱର୍ଗକନ୍ୟା ଉଷାଙ୍କ ପ୍ରତି ସୂର୍ଯ୍ୟଙ୍କର ଅନ୍ୱେଷା ଓ ପଶ୍ଚାଦ୍‌ଧାବନର ରୂପକଳ୍ପଭାବେ ଚିନ୍ତା କରିଥାନ୍ତି । ପ୍ରଣୟୀ ସୂର୍ଯ୍ୟ, ପ୍ରତି ମୁହୂର୍ତ୍ତରେ ଉଷାପ୍ରତି ଆକୃଷ୍ଟ ଚିତ୍ତରେ ଧାବମାନ: କିନ୍ତୁ ଉଷା ତାଙ୍କୁ ଧରା ନ ଦେଇ ଅପ୍ସରାର ନୃତ୍ୟଭଙ୍ଗୀରେ ଚାଲିଯାନ୍ତି;- ଏହି ପ୍ରକୃତି-ଦୃଶ୍ୟର ସାଙ୍କେତିକଭାବ ଆମେ ପୁରୁରବା-ଉର୍ବଶୀଙ୍କ ପ୍ରଣୟ ଆଖ୍ୟାନରେ ଦେଖିବାକୁ ପାଉଛୁ । ଗୌତମ ଓ ଅହଲ୍ୟାଙ୍କ କାହାଣୀ ସେହି ଲୋକୋତ୍ତର ରୂପକଳ୍ପର ମାନବୀୟ ଚିତ୍ରଣ, ଏହିପରି କେତେକ ଭାବିଥାନ୍ତି । ଅହଲ୍ୟା ଗୌତମଙ୍କ ଅଭିଶାପରେ ପାଷାଣୀ ହୋଇଯାଇଥିଲେ; ଉର୍ବଶୀ ମଧ୍ୟ କୁମାରଙ୍କ ଉପବନରେ ଲତା ହୋଇଥିଲେ ।

## ସୂର୍ଯ୍ୟ ଓ ସୂର୍ଯ୍ୟା

ବେଦବର୍ଣ୍ଣିତ ସୂର୍ଯ୍ୟ ଓ ସୂର୍ଯ୍ୟାଙ୍କର ବିବାହ ଉଲ୍ଲେଖନୀୟ । ସୂର୍ଯ୍ୟା ହେଉଛନ୍ତି ପ୍ରାତଃସଂଧ୍ୟାର ରୂପକଳ୍ପ । ସ୍ୱୟଂ **ଗାୟତ୍ରୀ ଉଷା** । ତରୁଣ ସୂର୍ଯ୍ୟଙ୍କ ସହିତ ଉଷାଙ୍କ ମିଳନ ଖୁବ୍ କ୍ଷଣସ୍ଥାୟୀ । ସୂର୍ଯ୍ୟ ଦିଗ୍‌ବଳୟ ମଧ୍ୟରୁ ଆକାଶ ମାର୍ଗକୁ ଆସିଲେ ଉଷାକାଳ ସମାପ୍ତ ହୋଇଯାଏ । ସତେ ଅବା ଉଷା ତ୍ରସ୍ତାହରିଣୀ ପରି ଭୟାତୁରା, ଦ୍ରୁତଗତିରେ ପଳାୟନ କରୁଛନ୍ତି ଏବଂ ସୂର୍ଯ୍ୟ ତାଙ୍କୁ ପାଇବାପାଇଁ ପଶ୍ଚାଦ୍‌ଧାବନ କରୁଛନ୍ତି । ବୈଦିକସାହିତ୍ୟରେ ଉଷା/ସୂର୍ଯ୍ୟାଙ୍କୁ ସବିତାଙ୍କର ମାତୃସ୍ୱରୂପା, ଶକ୍ତିସ୍ୱରୂପା, କନ୍ୟା ଏବଂ ପ୍ରଣୟିନୀ- ବିଭିନ୍ନ ଭାବରେ ଚିତ୍ରଣ କରାଯାଇଛି । ଏମାନଙ୍କ ମିଳନ କେବଳ ନବୋଦିତ ବାଳାରୁଣଙ୍କ କିରଣସଂପାତରେ କ୍ଷଣସ୍ଥାୟୀ । ସୁମେରୁ ଅଞ୍ଚଳରେ ଉଷାକାଳର ଅବଧି ଅପେକ୍ଷାକୃତ ଦୀର୍ଘ, କିନ୍ତୁ ମର୍ତ୍ତ୍ୟଲୋକରେ ଦେବାଙ୍ଗନା ଉଷାଙ୍କ ସହିତ ପ୍ରଣୟୀ ସୂର୍ଯ୍ୟଙ୍କର ମିଳନ ଚପଳାକନ୍ୟାର ଚକିତ ଚାହାଣି ପରି ଅବ୍ୟକ୍ତ ରହିଯାଉଛି । ସୂର୍ଯ୍ୟଙ୍କ କିରଣସ୍ପର୍ଶରେ ଶିହରିତ ଅହଲ୍ୟା ଏବଂ ସଂକୁଚିତ ଉଷା- କ୍ଷଣିକ ମିଳନର ଛାୟାକଳ୍ପ । ଅନ୍ୟପକ୍ଷରେ ଅହଲ୍ୟା ଏବଂ ଉଷା; ଉଭୟେ ଶାଶ୍ୱତକନ୍ୟାରୂପେ ବର୍ଣ୍ଣିତ ହୋଇଛନ୍ତି । ସେମାନେ ସତେଅବା ଚିରକୁମାରୀତ୍ୱର ସାଙ୍କେତିକ ବିଗ୍ରହ । ଅହଲ୍ୟା ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ବିଭିନ୍ନ ପ୍ରକାର ହୋଇପାରେ । 'ଅହଃ'- ଅର୍ଥାତ୍

ଦିବସ । ଦିବସରେ ଯିଏ ଲୀନ ହୋଇଯାନ୍ତି; ଏହି ଅର୍ଥ ଉଷା ଓ ଶିଶିରବିନ୍ଦୁକୁ ବୁଝାଉଛି । ଦିବସ ହେବାମାତ୍ରେ ଉଷାକାଳ ଚାଲିଯାଏ, ଶିଶିରବିନ୍ଦୁ ଶୋଷିତ ହୋଇଯାଏ । ଅହଲ୍ୟାର ଅନ୍ୟ ଏକ ଅର୍ଥ ହେଉଛି, କର୍ଷିତ ହୋଇ ନ ଥିବା ଭୂମି/କ୍ଷେତ୍ର; ବ୍ୟଞ୍ଜନାରେ ଏହା କୁମାରୀ ଭୂମି/କୁମାରୀ କନ୍ୟାକୁ ବୁଝାଏ । ପ୍ରାତଃସ୍ମରଣ ମନ୍ତ୍ରରେ ଅହଲ୍ୟା ହେଉଛନ୍ତି ଶାଶ୍ୱତ କନ୍ୟା । ରୂପକଳ୍ପରେ ସୁପ୍ରତିଷ୍ଠ କୌମାର୍ଯ୍ୟର ଭବ୍ୟ ମୂର୍ତ୍ତି । ତପସ୍ୟାର ମୂର୍ଚ୍ଛିତ ରେଖା । ଗୌତମଙ୍କ ଅଭିଶାପ ମଧ୍ୟ ବିମର୍ଶନୀୟ । ସହସ୍ରବର୍ଷ ଧରି ନିରାହାରା, ଅଦୃଶ୍ୟା ଏବଂ କେବଳ ବାୟୁଭକ୍ଷା । ରାମଚନ୍ଦ୍ର ପାଷାଣଗୁମ୍ଫା ମଧ୍ୟରୁ ପାଷାଣୀ ଅହଲ୍ୟାଙ୍କୁ ଉଦ୍ଧାର କରିଛନ୍ତି । କ୍ଷୁଦ୍ର ଛିଦ୍ରଦେଇ କେବଳ ବାୟୁ ଗତାଗତ କରୁଥାଏ । ତାହାହିଁ ତପସ୍ୱିନୀ ଅହଲ୍ୟାର ଆହାରବୃତ୍ତି; ଉର୍ଜିତ ତପସ୍ୟାର ପରାକାଷ୍ଠା, କ୍ରାନ୍ତିବିନ୍ଦୁ । ସ୍ୱୟଂ ରାମଚନ୍ଦ୍ର ଅହଲ୍ୟାଙ୍କର ପଦସ୍ପର୍ଶ କରି ସେହି ଅସୂର୍ଯ୍ୟଂପଶ୍ୟାଙ୍କୁ ଗୁହାମଧ୍ୟରୁ ଉଦ୍ଧାର କରିଥିଲେ । ବାଲ୍ମୀକିଙ୍କ ବର୍ଣ୍ଣନାରୁ ଜଣାଯାଏ, ସ୍ୱୟଂ ବ୍ରହ୍ମା ଗୌତମଙ୍କ ହସ୍ତରେ ଏହି କନ୍ୟାଙ୍କୁ ପ୍ରଦାନ କରିଥିଲେ । ତେଣୁ ଅହଲ୍ୟା କୌଣସି ଦେବକନ୍ୟା ଅଥବା ଅପ୍ସରା ହୋଇପାରନ୍ତି । ବର୍ଣ୍ଣନାରେ ଅତିରଞ୍ଜିତ ଅଥବା ଚମତ୍କାରିତା ଥାଇପାରେ, କିନ୍ତୁ ଘଟଣାପ୍ରବାହ ମଧ୍ୟରେ ଅହଲ୍ୟା ପଶ୍ଚାତ୍ତାପର ଅନ୍ତର୍ଦାହରୁ ଉତ୍ତରିତ ହେବାପାଇଁ ସମସ୍ତଙ୍କ ଦୃଷ୍ଟିପଥରୁ ନିଜକୁ ସଂଗୋପିତ କରି ତପୋବନର ଗୁହାମଧ୍ୟରେ ଏକାକିନୀ ତପସ୍ୱିନୀ ଜୀବନ ବିତାଇଛନ୍ତି । ଅହଲ୍ୟାର ଅନ୍ୟ ଏକ ଅର୍ଥ - ଅହଃ ଲୀୟତେ ଅସ୍ୟାମ୍; ଅର୍ଥାତ୍ ଯେଉଁଠି ଦିବସ ନିଃଶେଷ ହୁଏ । ଏହା ସାୟଂ ସନ୍ଧ୍ୟାକୁ ବୁଝାଉଅଛି । ଆଉ ମଧ୍ୟ 'ଅ ଠାରୁ ହ' ପର୍ଯ୍ୟନ୍ତ ବର୍ଣ୍ଣମାଳାକୁ 'ଅହ' ଶବ୍ଦରେ କୁହାଯାଇପାରେ । ଏହି ବର୍ଣ୍ଣମାଳା ଯେଉଁ ଶରୀରରୂପେ ନ୍ୟସ୍ତ, ପ୍ରଲୀନ; ସେହି ବର୍ଣ୍ଣରୂପା ବାଣୀଙ୍କୁ ଅହଲ୍ୟା କୁହାଯାଇପାରେ । ସମସ୍ତ ବ୍ୟାଖ୍ୟାନ ମଧ୍ୟରେ କୁମାରୀ କନ୍ୟା [ନ ହଲ୍ୟା-ଅହଲ୍ୟା] ଅଧିକ ଭାବବ୍ୟଞ୍ଜକ ।

### ତପସ୍ୱିନୀ ଅହଲ୍ୟା

ଗୌତମ ଶବ୍ଦଟି ଗୋତମ ଶବ୍ଦରୁ ଆସିଛି । ଏହା ପ୍ରଖ୍ୟାତ ବୈଦିକ ଋଷିବଂଶ । 'ଗୋ' ଶବ୍ଦର ବିଭିନ୍ନ ଅର୍ଥ ରହିଛି । ସେଥିମଧ୍ୟରୁ ଇନ୍ଦ୍ରିୟ, ରଶ୍ମି ଓ ପ୍ରଜ୍ଞାନ ଉଲ୍ଲେଖଯୋଗ୍ୟ । ତେଣୁ 'ଗୌତମ' ଶବ୍ଦଟି 'ଅଧ୍ୟାତ୍ମଜ୍ଞାନର ଅନନ୍ୟ ପ୍ରବକ୍ତା' - ଭାବକୁ ମଧ୍ୟ ସୂଚାଉଅଛି । ଗୌତମ ହେଉଛନ୍ତି ପ୍ରଖ୍ୟାତ ଋଷି ଏବଂ ଗୌତମ ବଂଶର ପ୍ରବର୍ତ୍ତକ । ସେହି ବଂଶ ଗୋତମ/ଗୌତମ ବଂଶନାମରେ ଆଖ୍ୟାତ । ତଦ୍‌ବଂଶୀୟ

ଋଷିମାନେ ମିଥିଳାର ପ୍ରଖ୍ୟାତ ଜନକବଂଶର ପୁରୋହିତରୂପେ ପ୍ରତିଷ୍ଠିତ । ସେହି ସମୟରେ ମିଥିଳା ଥିଲା ବିଦ୍ୟା ଓ ଜ୍ଞାନଚର୍ଚ୍ଚାର ପ୍ରସିଦ୍ଧ କେନ୍ଦ୍ର । ଅହଲ୍ୟାଚରିତର ମାନବୀୟ ଦିଗଟି ଏକାଧାରରେ କରୁଣ ଓ କାବ୍ୟିକ । ସେ ଋଷିପତ୍ନୀ । ଋଷିଙ୍କ ଆଶ୍ରମ ରାଣୀହଂସପୁର ସଦୃଶ ସୁରକ୍ଷିତ ନୁହେଁ । ତପୋବନରେ ସମସ୍ତେ ପ୍ରବେଶ କରିପାରନ୍ତି । ସେଥିପାଇଁ ଅନୁମତିର ଆବଶ୍ୟକତା ନାହିଁ । ମିଥିଳାର ଜନକସଂଜ୍ଞିତ ରାଜର୍ଷିମାନଙ୍କ ଉପରେ ତପୋବନର ସୁରକ୍ଷା ଦାୟିତ୍ୱ । ରାମଚନ୍ଦ୍ରଙ୍କ ସମୟକୁ ଜନକ **ସୀରଧ୍ୱଜ** ଥିଲେ ମିଥିଳାର ରାଜା । ମହୀୟସୀ ସୀତାଙ୍କୁ ସେ କନ୍ୟାରୂପେ ପାଳନ କରିଥିଲେ । ଇନ୍ଦ୍ରଙ୍କ ସହିତ ଏହି ରାଜବଂଶର ସୌହାର୍ଦ୍ଦ ଥିଲା । ଇନ୍ଦ୍ର ମଧ ଗୌତମଙ୍କ ଆଶ୍ରମରେ ଶିକ୍ଷାଲାଭ କରିଥିଲେ । ମୁନିବେଶରେ ଅହଲ୍ୟାଙ୍କ ପ୍ରତି ଅସଦାଚାର ହେତୁ ସେ ଅଭିଶପ୍ତ । ଇନ୍ଦ୍ର ହେଉଛନ୍ତି ଦେବସଂସ୍କୃତିର ପ୍ରତିଭୂ । ଦେବତା ଓ ଅପ୍ସରା ସଂସ୍କୃତିଠାରୁ ଆର୍ଷ ସଂସ୍କୃତି ଭିନ୍ନ । ଋଷିମାନେ ସ୍ୱଭାବତଃ ଜିତେନ୍ଦ୍ରିୟ, ତପଃ-ସ୍ୱାଧ୍ୟାୟନିରତ । କିନ୍ତୁ ଦେବତାମାନେ ଇନ୍ଦ୍ରିୟପରତନ୍ତ୍ର । କେବଳ ମନୁଷ୍ୟଧର୍ମା କୁବେରଙ୍କ ବ୍ୟତୀତ, ଅନ୍ୟ ଦେବତାମାନେ ପ୍ରାୟ ଅସଂଯତେନ୍ଦ୍ରିୟ । ବିଶେଷକରି ଦେବରାଜ ଇନ୍ଦ୍ର ଓ ସୂର୍ଯ୍ୟ ଉଭୟେ ବାରମ୍ବାର କାମାୟନମାର୍ଗରେ ଦେବତ୍ୱର ମର୍ଯ୍ୟାଦାକୁ ଉଲ୍ଲଘଂନ କରିବାର ବର୍ଣ୍ଣନା ମିଳେ । ଅହଲ୍ୟା ସ୍ୱୟଂ ଦେବାଙ୍ଗନା । ଅପ୍ସରା ହୋଇଥିବାରୁ ଇନ୍ଦ୍ରଙ୍କ ମନରେ ରେଖାପାତ କରିଥିବେ । ଉର୍ବଶୀ ପ୍ରଭୃତି ଅପ୍ସରାମାନେ ଇନ୍ଦ୍ରଙ୍କର ଆଜ୍ଞାନୁବର୍ତ୍ତିନୀ ଓ ସହଜଲଭ୍ୟା । ସୁତରାଂ ଅହଲ୍ୟାଙ୍କ ପ୍ରତି ଇନ୍ଦ୍ରଙ୍କ ଦୃଷ୍ଟିକୋଣ ତଦନୁରୂପ ହୋଇଥିଲା । ସେ ମଣିଷ ସମାଜ, ବିଶେଷକରି ଋଷିକୁଳର ଆଚାରକୁ ଗୁରୁତ୍ୱ ଦେଇ ନାହାନ୍ତି । ଅନନ୍ୟୋପାୟା ଅହଲ୍ୟା ଋଷିକୁଳର ମର୍ଯ୍ୟାଦା ଓ ଲଜ୍ଜାଦୃଷ୍ଟିରୁ ଇନ୍ଦ୍ରଙ୍କର ଅନାଚାରକୁ ବେଦନାଭରା ହୃଦୟରେ ସହିନେଇଛନ୍ତି । ସତ୍ୟ ଓ ମର୍ଯ୍ୟାଦା ମଧ୍ୟରେ ଯଦି ଦ୍ୱିଧା ଆସେ, ନାରୀ କ'ଣ ବା କରିବ ? ନାରୀ ଲଜ୍ଜା ଓ ମର୍ଯ୍ୟାଦାର ଆବରଣକୁ ଭାଙ୍ଗି ସତ୍ୟ ପ୍ରକାଶ କରିପାରିବ ? ପୁରୁଷପ୍ରଧାନ ସମାଜରେ ନାରୀର ଅନ୍ତର୍ବେଦନା କେତେ ଯେ ଅସହ୍ୟ, ତାହା କେବଳ ଯଥାର୍ଥ ମାନବବାଦୀ ବ୍ୟକ୍ତିହିଁ ବୁଝିପାରିବ । ନାରୀ ଯେ ଅବଳା, ମର୍ଯ୍ୟାଦାର ଆବରଣ ତଳେ ତାକୁ ରହିବାକୁ ହେବ । ଲୋକଲଜ୍ଜାର କୃପାଣ ତା' ମସ୍ତକ ଉପରେ ଝୁଲୁଛି । ଅନ୍ୟଥା ସମାଜର ଲାଞ୍ଛନା ସହ୍ୟ କରିବା ତା'ର ଭାଗ୍ୟ । ସେଥିପାଇଁ ନାରୀମାନେ ସବୁ ବିଷୟ ପ୍ରକାଶ କରିପାରନ୍ତି ନାହିଁ । ସମସ୍ତେ ତ **ଜାବାଳା** ନୁହନ୍ତି; ନିଜ ସନ୍ତାନର ପିତୃପରିଚୟ ଦେବାକୁ ଯାଇ

କହିବେ, ''ବତ୍ସ, ସତ୍ୟକାମ ! ତୁମର ଗୁରୁଙ୍କୁ କହିବ, ମୁଁ ଯୌବନ ସମୟରେ ବହୁ ମୁନିଋଷିଙ୍କର ସେବା କରିଛି: ସେମାନଙ୍କର ଅଙ୍କଶାୟିନୀ ମଧ୍ୟ ହୋଇଛି । କିଏ ତୁମର ପ୍ରକୃତ ପିତା କହିପାରିବି ନାହିଁ ।'' ଗୁରୁ ମଧ୍ୟ ଅନୁରୂପ ମାନବବାଦୀ ଥିଲେ । ସମସ୍ତ ସାମାଜିକ ବିଦ୍ରୂପକୁ ଭ୍ରୂକ୍ଷେପ ନ କରି ଜଣେ ନାରୀ ସବଳ ଚିତ୍ତରେ ସତ୍ୟପ୍ରକାଶ କରିଛନ୍ତି; ମିଥ୍ୟାର ଆଶ୍ରୟ ନେଇ ନାହାନ୍ତି - ସେ ପ୍ରୀତ ହେଲେ । ଜାବାଳା-ପୁତ୍ର ସତ୍ୟକାମକୁ ଆଶ୍ରମର ବିଦ୍ୟାର୍ଥୀରୂପେ ଗ୍ରହଣ କଲେ । ମାତୃମୂଳକ ନାମରେ ପରିଚିତ କରାଇଲେ - '**ଜାବାଳି ସତ୍ୟକାମ**' । ଅନ୍ୟପକ୍ଷରେ ଅପବାଦକୁ ଭୟକରି ଆର୍ଯ୍ୟକନ୍ୟା କୁନ୍ତୀ ନିଜର କାନୀନପୁତ୍ର ବସୁଷେଣଙ୍କୁ [କର୍ଣ୍ଣ] ନଦୀବକ୍ଷରେ ଭସାଇ ଦେଇଥିଲେ । ସେହି ମହତ୍ତର ବ୍ୟକ୍ତି ନିଜର '**କୌନ୍ତେୟ**' ପରିଚୟରୁ ବଞ୍ଚିତ ହୋଇ ଜନସମାଜରେ '**ରାଧେୟ**' ନାମରେ ପରିଚିତ ହେଲେ । କୁନ୍ତୀଙ୍କର ସେହି ଜ୍ୟେଷ୍ଠପୁତ୍ର କାହିଁକି ଦାସୀପୁତ୍ର ରାଧେୟ ନାମରେ ଲାଞ୍ଛିତ ହେଲେ ? ପୁରୁଷପ୍ରଧାନ ସମାଜ ନିଜର ରୂଢ଼ିବାଦୀମନୋବୃତ୍ତି ହେତୁ ନାରୀର ବାସ୍ତବ ସମସ୍ୟାକୁ ବୁଝିବାକୁ ଚେଷ୍ଟା କରି ନାହିଁ, ବୁଝିକରି ମଧ୍ୟ ଉପେକ୍ଷା କରିଛି । ଅବଳାକୁ ସବଳା କରିବାର ସୁଯୋଗ ଦେଇ ନାହିଁ । କୌଣସି ନାରୀ ଅଣାୟତ୍ତ ଘଟଣାରେ ଅଥବା ହିଂସ୍ର, ସଂତ୍ରାସବାଦୀ ବା ରାକ୍ଷସପ୍ରବୃତ୍ତିର ଶରବ୍ୟ ହେଲେ, ତାହାକୁ ଦୁର୍ବୃତ୍ତର ବଳାତ୍କାରରୁ ତ ରକ୍ଷାକରି ପାରି ନାହିଁ; ବରଂ ପତିତା, ଅପାଙ୍‌କ୍ତେୟ କହି ଦୂରେଇ ଦେଇଛି । ଏହି ରକ୍ଷଣଶୀଳ ପ୍ରବକ୍ତାମାନେ ନିଜ ବଂଶର ପବିତ୍ର ରକ୍ତକୁ ରକ୍ଷା କରିବାକୁ ଯାଇ ଦେଶମାତୃକାକୁ ବିପନ୍ନ କରିଦେଇଛନ୍ତି । ଆତତାୟୀ, ଚକ୍ରାନ୍ତକାରୀ ଶତ୍ରୁମାନେ ଏହି ଦୁର୍ବଳ ତତ୍ତ୍ୱ ଉପରେ ବାରମ୍ବାର ଆଘାତ କରିଛନ୍ତି । ଥରେ ଯଦି ସନାତନୀ ସମାଜ ସ୍ଥିର କରିନିଅନ୍ତା, 'ବଳାତ୍କାର ବା ଅନାୟତ୍ତ ଘଟଣାରେ ଉତ୍ପୀଡ଼ିତା ନାରୀ ଆଦୌ ଅପବିତ୍ର ହେବ ନାହିଁ; ତାଦୃଶ ନାରୀର ଅନ୍ତର୍ବେଦନାକୁ ସହୃଦୟତାପୂର୍ବକ ବିଚାର କରି ସମ୍ମାନ ଦେଇ ଶିଖନ୍ତା;' ଏହି ଦୁର୍ବଳ ଦିଗଟି ସବଳତାରେ ରୂପାୟିତ ହୋଇଯାଆନ୍ତା । ଏହି ଦେଶର ଭୂମିକନ୍ୟାମାନେ, ଦେଶମାତୃକାର ଗୌରବ ରକ୍ଷା କରିବାକୁ ଆଗେଇ ଆସନ୍ତେ । 'ସତ୍ୟମେବ ଜୟତେ' - ଏହି ସନାତନୀ ବୈଦିକସୂକ୍ତ ମନ ଓ ବଚନରେ ପ୍ରତିଷ୍ଠିତ ହୋଇଯାଆନ୍ତା ।

ସେଦିନ ଅହଲ୍ୟାର ବ୍ୟଥାକୁ ବୁଝିଥିଲେ ମହର୍ଷି ବିଶ୍ୱାମିତ୍ର, କିନ୍ତୁ ଅନ୍ୟ ଆର୍ଯ୍ୟଋଷିମାନେ ଅନୁରୂପ ସହୃଦୟତାପୂର୍ବକ ଘଟଣାଟିକୁ ବିଚାର କରି ନ ଥିଲେ । ଦେବରାଜ ଇନ୍ଦ୍ରଙ୍କୁ ନିଜର ଲମ୍ପଟତାପାଇଁ ଶାସ୍ତି ଦେବାକୁ ଗୌତମ କେବଳ ଏକକ

ଚେଷ୍ଟା କରିଥିଲେ । ତାଙ୍କୁ ଅଭିଶାପ ଦେଇ ଚିରକାଳ ପାଇଁ ଲଜ୍ଜିତ କରିପାରିଛନ୍ତି । ବୃଷଣ ହରାଇ ଇନ୍ଦ୍ର ଦେବସମାଜରେ ମୁହଁ ଦେଖାଇ ପାରି ନାହାନ୍ତି । କିନ୍ତୁ ଦେବତାମାନଙ୍କ ସହିତ ବୃହତ୍ତର ସମ୍ପର୍କ ଦୃଷ୍ଟିରୁ ଜମ୍ବୁଦ୍ୱୀପର ରାଜନ୍ୟବର୍ଗ ଓ ଜନସାଧାରଣ ତାଙ୍କୁ ଦଣ୍ଡିତ କରିପାରି ନାହାନ୍ତି । କିନ୍ତୁ ଅହଲ୍ୟାଙ୍କ ପ୍ରତି ଗୌତମଙ୍କ ଅଭିଶାପ ! - ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ଅପରାଧ ଅପେକ୍ଷା ଦଣ୍ଡ ଅଧିକ ହୋଇଗଲା । ଅହଲ୍ୟାଙ୍କର ଅପରାଧ ହୁଏତ ହୋଇଛି, 'ଋଷିପତ୍ନୀର ହୃଦୟରେ କାମିନୀର ଅନୁଚିନ୍ତା' ? କିନ୍ତୁ ଆଲମ୍ବନ ନାୟକ ଯେ ସ୍ୱୟଂ ଗୌତମ ! ସେ ଦେବରାଜ ଇନ୍ଦ୍ରଙ୍କୁ ଚିହ୍ନିପାରି ନାହାନ୍ତି ଅଥବା ଦଣ୍ଡ ଦେଇ ପାରି ନାହାନ୍ତି (?)/ ଗୌତମଙ୍କ ଚିନ୍ତାରେ ସେ ପୂର୍ବରାଗସଂବଦ୍ଧା, ବିରହକାତରା । ସେ କୋମଳହୃଦୟା ସାନୁକ୍ରୋଶା ନାରୀ । ଋଷିପତ୍ନୀର ଅନୁରୂପ ସଂସ୍କାରକୁ ରକ୍ଷାକରିପାରି ନାହାନ୍ତି (?)/ ସେ ଅପ୍ସରାବଂଶସମ୍ଭୂତା । ତପସ୍ୟାର ଧାରାକୁ ସ୍ୱଭାବନିୟତ କରିବା ନିଶ୍ଚୟ ସମୟସାପେକ୍ଷ । ହୁଏତ ଆଶ୍ରମଧର୍ମର କିଛିଟା ଅସ୍ୱାଭାବିକ (?) କିନ୍ତୁ ଅହଲ୍ୟା ଯେ ଜନ୍ମରୁ ଋଷିକନ୍ୟା ନୁହନ୍ତି । ଦେବାଙ୍ଗନା । ''ଦେବାଃ ଉତ୍ସବପ୍ରିୟାଃ'' । ସେହି ଉତ୍ସବଭାବସତ୍ତାରୁ ଉତ୍ତରିତ ହୋଇ ଋଷିକନ୍ୟାର ପ୍ରଶାନ୍ତିକୁ ଉପଲବ୍ଧି କରିବାପାଇଁ କ'ଣ ଏହି ଦାରୁଣ ତପସ୍ୟା ? ହୋଇପାରେ ।

କିନ୍ତୁ କୌଶିକଙ୍କୁ ଆଜି ଅପୂର୍ବ ସୁଯୋଗ ମିଳିଛି । ସେ ଦାଶରଥି ରାମଙ୍କଠାରେ ଯୁଗପୁରୁଷଙ୍କୁ ଚିହ୍ନି ପାରିଛନ୍ତି । ତାଙ୍କୁ ଜଗତ୍‌ସମ୍ମୁଖରେ ପତିତ-ପାବନ ମହାପୁରୁଷ ଭାବେ ପ୍ରତିଷ୍ଠିତ କରାଇବେ । ଆର୍ଯ୍ୟମାନେ ବେଦବିହିତ ସ୍ୱାଭାବିକ ଧାରାର ପ୍ରବର୍ତ୍ତକ । ତତ୍ତ୍ୱଦୃଷ୍ଟିରୁ ସେମାନେ ସ୍ୱଭାବଧର୍ମୀ, ଉଦ୍‌ବର୍ତ୍ତନପ୍ରୟାସୀ, ତେଣୁ ସଂସ୍କାରଧର୍ମୀ । କିନ୍ତୁ ବଶିଷ୍ଠପ୍ରଭୃତି ନେତୃସ୍ଥାନୀୟ ଋଷିମାନେ ବିବର୍ତ୍ତମାନ ସଂସ୍କାରପ୍ରକ୍ରିୟାକୁ ବହୁପୂର୍ବରୁ ତ୍ୟାଗ କରିଛନ୍ତି । ସେମାନଙ୍କ ଆଚରଣରେ କ୍ରମବର୍ଦ୍ଧିଷ୍ଣୁ ଗତିଶୀଳତା ଲକ୍ଷିତ ହେଉ ନାହିଁ । ସମୟ ଓ ସ୍ଥିତିର ଚଳତ୍‌ସଂକାଶ ପ୍ରୟାସର ଅଭାବ । ସଂକୀର୍ଣ୍ଣ ରୂଢ଼ିବାଦ ମଧ୍ୟରେ କ୍ରାନ୍ତଦର୍ଶନ ସତେଅବା ସ୍ତବ୍ଧ ହୋଇଯାଇଛି । ସେମାନେ ନୂତନ ଗବେଷଣା ଓ ଉପଲବ୍ଧି ପାଇଁ ଯତ୍ନଶୀଳ ନୁହନ୍ତି । କେବଳ ଆଚାରର ବିଧିନିଷେଧ ମଧ୍ୟରେ ସଦ୍ଧର୍ମର ସ୍ୱଭାବଧାରା ଅଜ୍ଞାତ ଭାବରେ ରକ୍ଷଣଶୀଳ ହୋଇଯାଉଛି । ଯେଉଁ ମନୁବଂଶୀ ସମ୍ରାଟ୍‌ମାନେ ତପଃଶୀଳ ଥିଲେ, ସନ୍ତାନାର୍ଥେ ଦାରଗ୍ରହଣ କରୁଥିଲେ, ଆଜି ସେମାନେ ବିଳାସୀ ଓ ବ୍ୟସନୀ ହୋଇପଡ଼ିଛନ୍ତି । ଫଳରେ ରାକ୍ଷସମାନଙ୍କର ଆକ୍ରମଣାତ୍ମକ

ସନ୍ତ୍ରାସବାଦ ସର୍ବତ୍ର ଭୟକାତରତା ଓ ଅପସଂସ୍କୃତି ସୃଷ୍ଟି କରି ଚାଲିଛି । ଗଣଜାତୀୟ ପ୍ରଜାମାନେ ଅଯୋଧ୍ୟାର ମନୁବଂଶୀ ସମ୍ରାଟ୍‌ଙ୍କ ଉପରେ ଭରସା ରଖିଥିଲେ । ତପସ୍ୱୀମାନଙ୍କ ତପୋବନର ସୁରକ୍ଷା ମଧ୍ୟ ପ୍ରଶାସନର ଦାୟିତ୍ୱ । 'ରାଜ-ରକ୍ଷିତବ୍ୟାନି ତପୋବନାନି ନାମ' । ଆଜି ସିଦ୍ଧାଶ୍ରମଠାରୁ ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ସର୍ବତ୍ର ରାକ୍ଷସମାନଙ୍କର ଉତ୍ପୀଡ଼ନ, ବଳାତ୍କାର ଏବଂ ସନ୍ତ୍ରାସବାଦ । ଭାର୍ଗବ ପରଶୁରାମ ବହୁପୂର୍ବେ ନୂତନଯୁଗର ବାର୍ତ୍ତା ଆଣିଥିଲେ । ସହସ୍ରାର୍ଜୁନ ପ୍ରଭୃତି କୁଶାସକମାନଙ୍କୁ ନିହତ କରି ସନାତନ ଧର୍ମକୁ ରକ୍ଷା କରିଥିଲେ । ସେ ମଧ୍ୟ ଆଜି ଅବସନ୍ନ । ଅତୀତର କୃତିତ୍ୱ ଓ କାର୍ଯ୍ୟାବଳୀ ମଧ୍ୟରେ ଅବଲିପ୍ତ ଆବଦ୍ଧତା ହେତୁ ଦୂରଦୃଷ୍ଟିର ଅଭାବ ଘଟିଛି । ଅନ୍ୟାୟ, ଅତ୍ୟାଚାର ଓ ସନ୍ତ୍ରାସବାଦର ଉତ୍ସ ଏବଂ ଧାରା କୌଣସି ସ୍ଥାନ ବା ସମୟରେ ନିର୍ଦ୍ଦିଷ୍ଟ ନୁହେଁ । ଉତ୍ପୀଡ଼ନର ସ୍ୱରୂପ ମଧ୍ୟ ଭିନ୍ନ ଭିନ୍ନ ପ୍ରକାରରେ ମୁଣ୍ଡ ଟେକେ । ଏହି ଅପସଂସ୍କୃତିକୁ ପରାହତ କରିବାପାଇଁ ସତତ ସଚେତନ ରହିବାକୁ ହେବ । ସାମ, ଦାନ ବା ଭେଦନୀତିରେ ଅପସଂସ୍କୃତିକୁ ଦୂର କରାଯାଇପାରେ ନାହିଁ । ସେଥିପାଇଁ **ଦଣ୍ଡନୀତି** ଏକାନ୍ତ ପ୍ରଯୁଜ୍ୟ ।

ଆଜି ରାବଣର ଦର୍ପ ଓ କ୍ଷମତା ନିକଟରେ ସ୍ୱୟଂ ଦେବରାଜ ଇନ୍ଦ୍ର ନିରସ୍ତ । କୁବେର ଲଙ୍କା ତ୍ୟାଗକରି ଅଳକାରେ ନୂତନ ଆଶ୍ରୟସ୍ଥାନ ଲୋଡ଼ିଛନ୍ତି । ଯକ୍ଷମାନେ ପରାହତ । ଅଯୋଧ୍ୟାର ଦଶରଥ ନିଜ ରାଣୀହଂସପୁର ମଧ୍ୟରେ ଆବଦ୍ଧ । ମିଥିଳାର ସୀରଧ୍ୱଜ ସ୍ୱଭାବନିର୍ଲିପତା ମଧ୍ୟରେ ଦୈବବାଦୀ ହୋଇଯାଇଛନ୍ତି । ଅନ୍ୟ ଆର୍ଯ୍ୟରାଜାମାନେ ନିଜକୁ କୌଣସି ପ୍ରକାରେ ବଞ୍ଚାଇ ଚଳିବାରେ ଅଭ୍ୟସ୍ତ ହୋଇଗଲେଣି । କିଷ୍କିନ୍ଧ୍ୟାର ବାଳୀ ବୀର, କିନ୍ତୁ ରାଜନୈତିକ ପ୍ରତିଷ୍ଠାପାଇଁ ସେପରି କୌଣସି ଆକାଙ୍କ୍ଷା ନାହିଁ । ତାହାର ସୈନ୍ୟବଳ ଉତ୍ସାହୀ, କିନ୍ତୁ କୌଣସି ଉନ୍ନତ ଅସ୍ତ୍ରଶସ୍ତ୍ର କିମ୍ବା ସମରାଭ୍ୟାସ ମଧ୍ୟ ନାହିଁ । ସେ ବା କାହିଁକି ସଂସ୍କାରପ୍ରୟାସୀ ଆର୍ଯ୍ୟ ସଂସ୍କୃତିକୁ ନିଜପକ୍ଷରୁ ସାହାଯ୍ୟ କରିବେ ? ଅଧିକନ୍ତୁ ଲୋକଦାରୁଣ ରାବଣ ମଧ୍ୟ ବାଳୀସହିତ ବନ୍ଧୁତ୍ୱ ରକ୍ଷାକରିଛି । ସମଗ୍ର ଆର୍ଯ୍ୟଜାତି ଓ ସନାତନ ସଂସ୍କୃତି ଆଜି ବିପନ୍ନ । ଗଣଜାତି ଉପଦ୍ରୁତ । ସମସ୍ତେ ଆଜି ଭୟଭୀତ । ଜମ୍ବୁଦ୍ୱୀପ ନେତୃତ୍ୱଶୂନ୍ୟ । ରାକ୍ଷସମାନଙ୍କ ନିକଟରେ ମାୟାଯୁଦ୍ଧର ପ୍ରୟୋଗାତ୍ମକ ବିଦ୍ୟା ରହିଛି । ସେମାନେ ଏବେ ମଧ୍ୟ ଅଲୌକିକ ଶକ୍ତିର ଅଧିକାରୀ । ରାବଣ କୁବେରଙ୍କଠାରୁ ପୁଷ୍ପକ ବିମାନ ଛଡ଼ାଇ ଆଣିଛି । ପାତାଳପୁରରେ ଲୁଚିଥିବା ଶତସହସ୍ର ଦୈତ୍ୟ ଓ ରାକ୍ଷସ ଆଜି

ରାବଣର ଅନୁଗାମୀ । ଅନ୍ୟ ଦେଶ ସହିତ ସମ୍ବନ୍ଧ ସ୍ଥାପନ କରିଛି । ପୁତ୍ର ମେଘନାଦ ନୂତନ ଅସ୍ତ୍ରଶସ୍ତ୍ରର ଉଦ୍‌ଭାବନ କରିବା ପାଇଁ ସତତ ଚେଷ୍ଟିତ, ସେଥିପାଇଁ ନିକୁମ୍ଭିଲା ଗବେଷଣାଗାରରେ ନୂତନ ନୂତନ ଯଜ୍ଞର ଆୟୋଜନ କରୁଛି । ପରୀକ୍ଷା ନିରୀକ୍ଷା ଚଳାଇଛି ।

ଆର୍ଯ୍ୟଋଷିମାନଙ୍କ ନିକଟରେ ଯେ ଯୁଦ୍ଧବିଜ୍ଞାନର ଜ୍ଞାନ-କୌଶଳ ଏବଂ ଅସ୍ତ୍ରଶସ୍ତ୍ରର ରହସ୍ୟ ନାହିଁ, ତାହା ନୁହେଁ । କିନ୍ତୁ ପ୍ରଶାସକ ରାଜନ୍ୟମଣ୍ଡଳୀ ମଧ୍ୟରେ ଦୃଢ଼ତାର ଅଭାବରୁ ସେମାନେ ତାହା ଦେବାକୁ ଅନିଚ୍ଛୁକ । ହୁଏତ ଅପପ୍ରୟୋଗ ହୋଇପାରେ ଅଥବା ରାକ୍ଷସମାନଙ୍କ କରଗତ ହୋଇଯାଇପାରେ । ମହାରାଜ ଜନକଙ୍କ ପ୍ରାସାଦରେ ସ୍ୱୟଂ ଶିବଧନୁ କେବଳ ପୂଜାପାଉଛନ୍ତି । କେହି ତାହାର ପ୍ରୟୋଗାତ୍ମକ କୌଶଳ ଜାଣି ନାହାନ୍ତି । ଭାର୍ଗବ ପରଶୁରାମ କୌଣସି କ୍ଷତ୍ରିୟଙ୍କୁ ଯୁଦ୍ଧକୌଶଳ ଶିକ୍ଷା ଦେଉ ନାହାନ୍ତି । ଯେଉଁ ଆଚାର୍ଯ୍ୟମାନଙ୍କୁ ତଦୀୟକୌଶଳ ଶିକ୍ଷା ଦେଇଥିଲେ, ସେମାନଙ୍କ ମଧ୍ୟରେ ଅନୁରୂପ ଦେଶାତ୍ମବୋଧର ଅଭାବ ହେଉ ଅଥବା ଅସାମର୍ଥ୍ୟ ହେତୁ ତାହା ଉପଯୋଗ ହୋଇ ପାରୁ ନାହିଁ । ସେମାନଙ୍କ ମୃତ୍ୟୁ ସହିତ ସେହି ଜ୍ଞାନ ଲୁପ୍ତ ହୋଇଯାଉଛି । ବସ୍ତୁତଃ ଆର୍ଯ୍ୟମାନଙ୍କ ମନରେ ନୈରାଶ୍ୟ, ଜଡ଼ତା ଓ କ୍ଷୁଦ୍ରତା ଆସିଯାଇଛି । ନିଷାଦ, ବାନର, କିନ୍ନର ପ୍ରଭୃତି ବନେଚର ଜାତିମାନେ ଆର୍ଯ୍ୟ ପ୍ରଶାସନ ଓ ଋଷିମାନଙ୍କୁ ମାନ୍ୟତା ଦିଅନ୍ତି । କିନ୍ତୁ ସେମାନେ ରାକ୍ଷସମାନଙ୍କ ଦ୍ୱାରା ବିପନ୍ନ ହେଲାବେଳେ ଆର୍ଯ୍ୟ ପ୍ରଶାସନ ସୁରକ୍ଷା ଦେଇପାରୁ ନାହିଁ । ମନୁବଂଶୀ ଶାସନକର୍ତ୍ତାମାନଙ୍କ ସମ୍ମୁଖରେ କେତେ ନିର୍ଯାତନା ଘଟି ନ ଯାଇଛି ! କେତେ ଅପ୍ସରୀ, ବିଦ୍ୟାଧରୀ, କିନ୍ନରୀ, ଆର୍ଯ୍ୟକନ୍ୟା, ଦେବାଙ୍ଗନା ଆଦି ରାବଣ ଓ ତାହାର ସହାୟକ ରାକ୍ଷସଦୈତ୍ୟମାନଙ୍କଦ୍ୱାରା ଧର୍ଷିତା, ଲାଞ୍ଛିତା, ଅପହୃତା ହେଉ ନାହାନ୍ତି ? କେତେ ମୁନିଋଷିଙ୍କୁ ନିହତ କରି ସେମାନଙ୍କର ଉଷ୍ମ କଲିଜାକୁ ଖାଉ ନାହାନ୍ତି ? କିନ୍ତୁ କାହିଁ; କୌଣସିଠାରେ ସମ୍ମିଳିତ ପ୍ରତିକାରର ଚେଷ୍ଟା ନାହିଁ । ଏହା ଆତ୍ମଗ୍ଲାନି, ନୈରାଶ୍ୟ, ଅକ୍ଷମତାର ଉପସର୍ଗ । ସେଦିନ ତପସ୍ୱିନୀ ବେଦମତୀଙ୍କ ଉପରେ ଯେଉଁ ବଳାତ୍କାର ଘଟିଗଲା, ଦେବତାଙ୍କଠାରୁ ମନୁବଂଶୀଙ୍କ ପର୍ଯ୍ୟନ୍ତ କେହି କାହିଁତ ଉପଯୁକ୍ତ ପ୍ରତିକାର କଲେ ନାହିଁ ! ଅପ୍ସରା ରମ୍ଭା ଉପରେ ବଳାତ୍କାର ହେଲା; ଅଥଚ ଦେବରାଜ ଇନ୍ଦ୍ର ନିଜକୁ ନିରାପଦ ରଖିବାପାଇଁ ନୀରବ ରହିଲେ; ପ୍ରତିବାଦ ମଧ୍ୟ କରି ନାହାନ୍ତି । ସମସ୍ତଙ୍କୁ ମିଳିତ କରି ରାବଣ ବିରୋଧରେ ଅଭିଯାନ କରିବାପାଇଁ ନେତୃତ୍ୱ ନେଇ ନାହାନ୍ତି !

ସମସ୍ତେ ଆଜି ଭାଗ୍ୟବାଦୀ, ନିଷ୍ପ୍ରାଣ ଅଥବା କ୍ଷୁଦ୍ରସ୍ୱାର୍ଥ ରକ୍ଷାକରିବାପାଇଁ ଅଧଃପତିତ । ଜମ୍ବୁଦ୍ୱୀପର ଆର୍ଯ୍ୟସଂସ୍କୃତି ବିପନ୍ନ, ଅଥଚ ଏମାନେ ନିର୍ବିକାର, ଶିଥିଳ । ଏମାନଙ୍କର ଆତ୍ମବିଶ୍ୱାସ ଆଣିବାପାଇଁ କ'ଣ କରିବାକୁ ହେବ, ତାହାହିଁ ଆଜି କୌଶିକ ବିଶ୍ୱାମିତ୍ରଙ୍କର ପ୍ରଧାନ ଚିନ୍ତା ।

ଅଯୋଧ୍ୟାର ରାଜପୁତ୍ର ତରୁଣ ରାମ ତାଡ଼କାକୁ ମାରିଛନ୍ତି, ତାଡ଼କାବନକୁ ରାକ୍ଷସଶୂନ୍ୟ କରିଛନ୍ତି, ଯଜ୍ଞରକ୍ଷା କରିଛନ୍ତି । ଆଜି ଜନସାଧାରଣଙ୍କ ଆତ୍ମବିଶ୍ୱାସ ତାଙ୍କରି ମାଧ୍ୟମରେ ଏବଂ ନେତୃତ୍ୱରେ ଫେରିଆସୁଛି । ତାଙ୍କୁହିଁ ଶତସହସ୍ର ବିଜୟରେ ମଣ୍ଡିତ କରିବାକୁ ହେବ, ତାଙ୍କୁ ଯୁଗପୁରୁଷ ରୂପେ ସମସ୍ତଙ୍କ ସମ୍ମୁଖରେ ପ୍ରତିଷ୍ଠାପିତ କରାଇବାକୁ ହେବ । ସେ ମଧ୍ୟ ଦକ୍ଷ, କୁଶଳୀ, ବିନୟୀ ଏବଂ ଭାରତୀ ସଂସ୍କୃତି ତଥା ରାଜଧର୍ମର ସ୍ୱଚ୍ଛ ପ୍ରତିବିମ୍ବ । ଆଜି ଅହଲ୍ୟାର ସମସ୍ତ ଅପବାଦକୁ ଦୂରକରି ମହୀୟସୀ ସାଧ୍ୱୀରୂପେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରି ଶ୍ରୀରାମ ଜନମାନସରେ ପତିତପାବନ ମହାପୁରୁଷ ରୂପେ ପ୍ରତିଷ୍ଠିତ ହେବା ଆବଶ୍ୟକ । ତଦ୍ୱାରା ଜନସାଧାରଣ, ଋଷିକୁଳ ଏବଂ ଅଯୋଧ୍ୟା ଓ ମିଥିଳାର ରାଜଶକ୍ତି ପକ୍ଷରୁ ଅହଲ୍ୟାଙ୍କୁ ନିଷ୍ପାପା, ପବିତ୍ରହୃଦୟା, ଋଷିପତ୍ନୀ ଭାବରେ ସମ୍ମାନ ପ୍ରଦର୍ଶନ ସହିତ ଶ୍ରୀରାମଙ୍କ ଯଶଃ ପରିବ୍ୟାପ୍ତ ହେବ । ଲୋକମାନଙ୍କ କଣ୍ଠରୁ ଶ୍ରଦ୍ଧାପୂର୍ବକ ଉଦ୍‌ଗୀତ ହେବ-

''ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍'' ।

ବିଦେହର ପଥପ୍ରାନ୍ତରେ ମହର୍ଷି ବିଶ୍ୱାମିତ୍ର ଚାଲିଛନ୍ତି, ତାଙ୍କ ପଛରେ ଧନୁର୍ଦ୍ଧାରୀ ଶ୍ରୀରାମ ଓ ଲକ୍ଷ୍ମଣ । ସତେଅବା ସନାତନୀ ଜ୍ଞାନଜ୍ୟୋତିଃ ଆଗେଇ ଚାଲିଛନ୍ତି, ରାଜଶକ୍ତିର ପ୍ରଶାସନ ପୃଷ୍ଠଭାଗରେ ସମୁଚିତ ସୁରକ୍ଷାର ବ୍ୟବସ୍ଥା କରିଛନ୍ତି । ସାକ୍ଷାଦ୍ ସଞ୍ଚରଣଶୀଳା ଭାରତୀ ସଂସ୍କୃତିର ଅନବଦ୍ୟ ରୂପକଳ୍ପ । ସମସ୍ତଙ୍କ ହୃଦୟରେ ଚେତନାର ଉନ୍ମେଷ, **''ଚରୈବେତି, ଚରୈବେତି, ଚରନ୍ ବୈ ମଧୁବିନ୍ଦତି''** । ଜ୍ଞାନୀ ଓ ବିଦ୍ୱାନ୍‌ମାନଙ୍କର ଅନ୍ତରରେ ଆତ୍ମବିଶ୍ୱାସ ଫେରିଆସୁଛି । ପ୍ରଜାଗଣଙ୍କ ମନରେ ଅଭୟ ଭରିଯାଉଛି । ତପୋବନ ସମେତ ଜ୍ଞାନୀ ଏବଂ ଚିନ୍ତକ ଗୋଷ୍ଠୀର ସୁରକ୍ଷା ପାଇଁ ଆର୍ଯ୍ୟଶାସନ ଅଙ୍ଗୀକାରବଦ୍ଧ । ସେମାନେ ଅଭିଷିକ୍ତ ହେଲାବେଳେ ଅନୁରୂପ ପ୍ରତିଜ୍ଞା ମଧ୍ୟ କରିଥାନ୍ତି । କିନ୍ତୁ ଭୋଗବିଳାସ ମଧ୍ୟରେ ନିଜର କର୍ତ୍ତବ୍ୟ ଭୁଲିଯାନ୍ତି । ଏହି ଚିନ୍ତକ ତଥା ଜ୍ଞାନଧର୍ମୀ ଗୋଷ୍ଠୀକୁ ତତ୍ତ୍ୱତଃ **ବ୍ରାହ୍ମଣ** କୁହାଯାଏ । ସେମାନେ ମଧ୍ୟ ନିଜ ନିଜର

କ୍ଷୁଦ୍ର ସ୍ୱାର୍ଥପାଇଁ ଜାତୀୟ କର୍ତ୍ତବ୍ୟ ଭୁଲିଯାଇଛନ୍ତି । ଶାସନତନ୍ତ୍ରକୁ ଉପଯୋଗୀ ଦିଗ୍‌ଦର୍ଶନ ଦେଇପାରି ନାହାନ୍ତି; ଶାସକଗୋଷ୍ଠୀ ଦେଶର ଏବଂ ଜ୍ଞାନମାର୍ଗର ସୁରକ୍ଷାକୁ ଅବହେଳା କରିଛନ୍ତି । ଫଳରେ ଏହି ମହାନ୍ ଦେଶ ଓ ସଂସ୍କୃତି ବାରମ୍ବାର ଉପଦ୍ରୁତ ହେଉଛି ।

ପ୍ରଶାସନର ଆଚାର ବା ନୀତି ସ୍ଥାଣୁ ହେବା ଉଚିତ ନୁହେଁ । ସମୟ ଏବଂ ଅବସ୍ଥାକୁ ଲକ୍ଷ୍ୟ କରି ଶାସ୍ତ୍ରବଚନର ପ୍ରୟୋଗ ହେବା ଉଚିତ । କିନ୍ତୁ ଆର୍ଯ୍ୟମାନେ ଶାସ୍ତ୍ରବଚନର ଉଦ୍ଦେଶ୍ୟକୁ ହରାଇ ବେଳେବେଳେ କେବଳ ବିଧିନିଷେଧକୁ ମାନନ୍ତି; ଯାହା ଫଳରେ ଅପଶକ୍ତି ଓ ଦୁରାଚାର ମୁଣ୍ଡ ଟେକେ । 'ନାରୀହତ୍ୟା ମହାପାପ' - ଏହା ନୀତିସମ୍ମତ । କିନ୍ତୁ କୌଣସି ନାରୀ ଯଦି ଭୟଙ୍କର ଅତ୍ୟାଚାରରେ ନିରୀହ ବ୍ୟକ୍ତିମାନଙ୍କୁ ଉତ୍ପୀଡ଼ନ କରେ, ସେ କ'ଣ ବଧ୍ୟ ନୁହେଁ ? ଏହି ଦ୍ୱିଧା ସେଦିନ ରାମଚନ୍ଦ୍ରଙ୍କ ମନରେ ମଧ୍ୟ ଆସିଛି । ତାଡ଼କା ନାରୀ ହୋଇଥିବାରୁ ତାହାକୁ ନିହତ କରିବେ କି ନାହିଁ, ତଦ୍ଦ୍ୱାରା ଆର୍ଯ୍ୟବିଧି ବିଡ଼ମ୍ବିତ ହେବକି ? ଏହି ଦ୍ୱନ୍ଦ୍ୱ ମଧ୍ୟରେ ଶ୍ରୀରାମଙ୍କ ମନ ଆନ୍ଦୋଳିତ । କିନ୍ତୁ ଦିବ୍ୟଦ୍ରଷ୍ଟା ବିଶ୍ୱାମିତ୍ରଙ୍କ ମନୋବୃତ୍ତି ଦ୍ୱିଧାହୀନ । ସେ ସ୍ପଷ୍ଟତଃ ଆଦେଶ ଦେଇଛନ୍ତି, ''ସଦ୍ଧର୍ମରେ ଯେଉଁ ବିଧି ନିଷେଧ ଅଛି, ତାହା କେବଳ ସେହି ବିନୟ ଏବଂ ଆଚାରକୁ ମାନ୍ୟତା ଦେଉଥିବା ବ୍ୟକ୍ତିମାନଙ୍କ ପାଇଁ ପ୍ରଯୁଜ୍ୟ । ତାଡ଼କା ନାରୀ ହୋଇପାରେ, କିନ୍ତୁ ତା'ର ଅତ୍ୟାଚାର ଓ ଉପଦ୍ରବ ସମସ୍ତ ସୀମା ଅତିକ୍ରମ କରିଛି । ତା'ର ହୃଦୟ ନିର୍ଦ୍ଦୟ, ଭାବବୃତ୍ତି ପ୍ରଚଣ୍ଡ ତାମସିକ, ସତେଅବା ପାପାଚାରର ଭୟଙ୍କର ମୂର୍ତ୍ତି । ନାରୀଧର୍ମର କୌଣସି ଗୁଣ ତାହା ପାଖରେ ନାହିଁ । ସେ ଏକ କଳୁଷକାଳିମା । ତାହାକୁ ବଧ କରିବାରେ ସାମାନ୍ୟତମ ଦ୍ୱିଧା ରହିବା ଉଚିତ ନୁହେଁ । ଅନ୍ୟପକ୍ଷରେ ପୃଥିବୀ ତଥା ନିରୀହ ପ୍ରଜାକୁଳ ରକ୍ଷା ପାଇବେ । ହେ ରାମ ! ଏହା କୌଶିକ ବିଶ୍ୱାମିତ୍ରଙ୍କର ଆଦେଶ, ତୁମେ ତାକୁ ନିହତ କର ।'' ବିଶ୍ୱାମିତ୍ରଙ୍କର ବଚନ ଥିଲା ରାମଙ୍କ ପକ୍ଷରେ ସ୍ପଷ୍ଟାକ୍ଷର ମନ୍ତ୍ର । ଏବେ ମଧ୍ୟ ଏହି ଦେଶ ଓ ପ୍ରଶାସନ - ବିଧି ନିଷେଧର ଯଥାର୍ଥ ଉଦ୍ଦେଶ୍ୟ ବୁଝିପାରି ନାହିଁ । ସେଥିପାଇଁ ତ ଗୌତମବଂଶୀ ବୁଦ୍ଧଙ୍କୁ କହିବାକୁ ହେଲା.....

''ବେଦରେ ଉଲ୍ଲେଖ ଅଛି, ସେଥିପାଇଁ ଯେ ତାହା ଆପ୍ତବାକ୍ୟ, ସେପରି ନୁହେଁ; ଶାସ୍ତ୍ରବଚନ ମଧ୍ୟ ପ୍ରମାଣ ନୁହେଁ, ବୁଦ୍ଧବଚନ ମଧ୍ୟ ପ୍ରମାଣ ନୁହେଁ, ଯାହା ନିର୍ମଳ ହୃଦୟକୁ ସ୍ପର୍ଶ କରେ, ତାହାହିଁ ପ୍ରମାଣ'' । ''ଆତ୍ମନଃ ପ୍ରିୟମେବ ଚ'' । ଆଜି କୌଶିକ ବିଶ୍ୱାମିତ୍ରଙ୍କର ନିର୍ଦ୍ଦେଶ ସ୍ପଷ୍ଟ ଏବଂ କାର୍ଯ୍ୟରେ ରୂପାୟିତ କରିବାପାଇଁ ରାଜଶକ୍ତିର ପ୍ରତିଭୂ ଶ୍ରୀରାମ ସତତ ଆଗ୍ରହୀ । ଯାହା କହନ୍ତି **''ବ୍ରାହ୍ମକ୍ଷତ୍ରଂ ଚ ଦୁର୍ଲ୍ଲଭମ୍''** ।

ମିଥିଳା ଅଭିମୁଖରେ ରାମ ଓ ଲକ୍ଷ୍ମଣଙ୍କ ସମେତ ଋଷିମାନେ ଚାଲିଛନ୍ତି । ବିଶ୍ୱାମିତ୍ର ସମସ୍ତଙ୍କ ସମ୍ମୁଖରେ । ସତେଅବା ଆର୍ଯ୍ୟଚେତନାର ନିଷ୍କମ୍ପ ସଞ୍ଚାରିଣୀ ଦୀପଶିଖା । ଆଲୋଚନା ପ୍ରସଙ୍ଗରେ ଜମ୍ବୁଦ୍ୱୀପର ପ୍ରତ୍ୟେକ ସ୍ଥାନ, ନଦନଦୀ, ବନପର୍ବତ, ପ୍ରକୃତିମାତାର ଉଦାରବିଭବ ଏବଂ ଆର୍ଯ୍ୟ ଆଚାରବିଚାରର ସାରସ୍ୱତ ଧାରା ସ୍ଥାନ ପାଉଥାଏ । କେତେ ଇତିବୃତ୍ତ; ଯାହା ଜନଶ୍ରୁତିରେ ଭିନ୍ନ ଭିନ୍ନ ରୂପରେ ପ୍ରତିଫଳିତ ହୋଇଛି - ସବୁକିଛି ମହର୍ଷି ବୁଝାଉଥାନ୍ତି । ଜନସାଧାରଣ ଅପୂର୍ବ ଉଲ୍ଲାସରେ ସେମାନଙ୍କୁ ମାର୍ଗ ମଧ୍ୟରେ ସ୍ୱାଗତ ଜଣାଉଥାଆନ୍ତି । ଅଯୋଧ୍ୟାର ରାଜକୁମାର ସିଦ୍ଧାଶ୍ରମକୁ ନିରାପଦ କରିପାରିଛନ୍ତି; ଭୟଙ୍କରୀ ତାଡ଼କାକୁ ମାରିଛନ୍ତି; ସୁବାହୁ ନିହତ ହୋଇଛି; ରାକ୍ଷସମାନଙ୍କର ଦୁର୍ଗ ଚୂର୍‌ମାର୍ ହୋଇଯାଇଛି - ଏହିସବୁ ବାର୍ତ୍ତା ବିଦ୍ୟୁତ୍‌ବେଗରେ ପ୍ରଚାରିତ ହୋଇଯାଇଥାଏ । ସମସ୍ତଙ୍କ ମୁହଁରେ ଗୋଟିଏ ଶବ୍ଦ - **ରାମ, ରାମ** । ପଥମଧ୍ୟରେ ଗୋଟିଏ ନିର୍ଜନ ସ୍ଥାନ ପଡ଼ିଲା । ଏକ ତପୋବନର ଛିନ୍ନଭିନ୍ନ ରୂପ । ପରିବେଶରୁ ଜଣାପଡୁଥାଏ, ଏକଦା ସ୍ଥାନଟି ସୁରମ୍ୟ ତପୋବନ ଥିଲା । ହଠାତ୍ କୌଶିକ ବିଶ୍ୱାମିତ୍ରଙ୍କ ପାଦ ସ୍ଥିର ହୋଇଗଲା । ସମସ୍ତେ ଅଟକିଗଲେ । ସିଦ୍ଧାଶ୍ରମରେ ରାକ୍ଷସମାନଙ୍କଦ୍ୱାରା ଉତ୍ପୀଡ଼ିତ, ଅତ୍ୟାଚାରିତ କେତେକ ଆର୍ଯ୍ୟକନ୍ୟାଙ୍କୁ ରାମ ଉଦ୍ଧାର କରିଥାନ୍ତି । ସେମାନଙ୍କର କରୁଣ କାହାଣୀ ରାମଙ୍କର ସଦୟ ହୃଦୟକୁ ତରଳାଇ ଦେଇଥାଏ । ସେ ଏକପ୍ରକାର ଧୈର୍ଯ୍ୟହରା ହୋଇପଡ଼ିଥାନ୍ତି । ରାଜନ୍ୟବର୍ଗ ଯେ ନିଜ ନିଜର କର୍ତ୍ତବ୍ୟରେ ଅବହେଳା କରିଛନ୍ତି, ସେଥିପାଇଁ ସେ ମନମଧ୍ୟରେ ଉତ୍ତରଦାୟିତ୍ୱ ବହନ କରିନେଇଥିଲେ । ହଠାତ୍ ତାଙ୍କ ହୃଦୟତନ୍ତ୍ରୀରେ କେଉଁ ମୂର୍ଚ୍ଛିତ ନାରୀର କରୁଣ ବିଳାପ ଧ୍ୱନି ବାଜିଉଠିଲା । ସ୍ୱାଭାବିକ ଭାବରେ ତାଙ୍କର ଚକ୍ଷୁ ସଜଳ ହୋଇଗଲା । ''ଗୁରୁଦେବ ! ଏହି ନିର୍ଜନ ସ୍ଥାନର ନାମ କ'ଣ ? ଜଣାପଡୁଛି ଗୋଟିଏ ପୁରାତନ ଆଶ୍ରମ ପରି । ସର୍ବତ୍ର ଅସ୍ୱାଭାବିକ ବିଜନତା, ସତେଅବା ପ୍ରିୟଜନ-ପରିତ୍ୟକ୍ତା ଶ୍ରୀହୀନା ନାରୀପରି । ଅନ୍ତରରେ କୌଣସି ମୂର୍ଚ୍ଛିତା ନାରୀର ବିଳାପ ମଧ୍ୟ ଶୁଣିବାକୁ ପାଉଛି । ଏହା କ'ଣ ରାକ୍ଷସମାନଙ୍କ ଉପଦ୍ରବର ପରିଣାମ ?'' ମହର୍ଷି କହିଲେ -''ବତ୍ସ ! ତୁମେ ଠିକ୍ ବୁଝିପାରିଛ । ଏହି ସ୍ଥାନ ଏକଦା ଗୌତମଙ୍କର ଶ୍ରୀସମୃଦ୍ଧ ଆଶ୍ରମ ଥିଲା । ରାକ୍ଷସମାନଙ୍କର ଉପଦ୍ରବ ନୁହେଁ; ସ୍ୱୟଂ ଦେବରାଜଙ୍କ କୁକାର୍ଯ୍ୟର ପରିଣତିରେ ଆଜି ଋଷିକୁଳ-ପରିତ୍ୟକ୍ତ । ପୁତ୍ର ! ସନାତନ ସଂସ୍କୃତି ଉପରେ ରାକ୍ଷସମାନେ ଆକ୍ରମଣ କରନ୍ତି, ସ୍ୱାଭାବିକ । କିନ୍ତୁ ସ୍ୱୟଂ ଦେବରାଜ ନିଜର କାମୁକ

ବିଳାସପାଇଁ କୁକାର୍ଯ୍ୟ ମଧ୍ୟ କରନ୍ତି; ଯଦ୍ଦ୍ୱାରା ଆର୍ଯ୍ୟ ସଂସ୍କୃତିର ଧାରା ପ୍ରତିହତ ହୋଇଯାଏ । ଅତ୍ୟାଚାର ସର୍ବଦା ବାହାରୁ ଘଟେ ନାହିଁ ; ରକ୍ଷକ ମଧ୍ୟ ଭକ୍ଷକ ହୁଏ । ତାହାହିଁ ଯନ୍ତ୍ରଣାଦାୟକ ବିଡ଼ମ୍ବନା'' । ''ଗୁରୁଦେବ ! ଆମେ ଏହି ଆଶ୍ରମ ମଧ୍ୟରେ ପ୍ରବେଶ କରିପାରିବା ?'' ରାମଙ୍କ ପ୍ରଶ୍ନରେ ମହର୍ଷିଙ୍କର ମୁଖମଣ୍ଡଳ ଝଲିଉଠିଲା । ସବୁକ୍ଷେତ୍ରରେ ଶ୍ରୀରାମ ଥିଲେ ତାଙ୍କର ଆଶାନୁରୂପ; ନା ନା ତତୋଽଧିକ ! କରୁଣାପୂର୍ଣ୍ଣ ନୟନରେ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ କହିଲେ, ବତ୍ସ ! ଏହି ଆଶ୍ରମରେ ତୁମର ପଦନ୍ୟାସ, ସାମାଜିକ ଓ ସାଂସ୍କୃତିକ ଉତ୍ତରଣର କ୍ରାନ୍ତିବିନ୍ଦୁ ହେଉ । ଅଗ୍ରଗାମୀ ହୁଅ ବୀର ! ଶ୍ରୀରାମ ଧୀରେ ଧୀରେ ଆଶ୍ରମଭୂମିରେ ଆଗେଇ ଯାଉଥାନ୍ତି । ଯଜ୍ଞଶାଳା, ଶିକ୍ଷାଗୃହ, ଛାତ୍ରାବାସ, କକ୍ଷାଗୃହ, କୁଳପତିଙ୍କ ନିବାସ... ଧ୍ୱଂସପ୍ରାପ୍ତ ଅବଲୁପ୍ତ ଚିହ୍ନଗୁଡ଼ିକୁ ମହର୍ଷି ଦର୍ଶାଇ ଦେଉଥାଆନ୍ତି । ସେଠାରେ ଏକ ଗହ୍ୱରସଦୃଶ ଗୁମ୍ଫା ମଧ୍ୟରେ ପ୍ରବେଶ କଲେ । ଅବରୁଦ୍ଧ ଦ୍ୱାରକୁ ଧୀରେ ଧୀରେ ଖୋଲି ରାଜପୁତ୍ର ପ୍ରବେଶ କରୁଥାନ୍ତି । ଦୁଇଟି ପ୍ରସ୍ତରାସ୍ତରଣର କ୍ଷୁଦ୍ର ସନ୍ଧିପ୍ରସ୍ତର ଅଳିନ୍ଦରେ ସତେଅବା ବହୁଯୁଗର ମୂର୍ଚ୍ଛିତା ନାରୀମୂର୍ତ୍ତି । ମହର୍ଷିଙ୍କ ନିର୍ଦ୍ଦେଶରେ ଶ୍ରୀରାମ ସେହି ଜୀର୍ଣ୍ଣଶୀର୍ଣ୍ଣ ନାରୀମୂର୍ତ୍ତିଙ୍କ ପଦ ଯୁଗଳକୁ ସ୍ପର୍ଶ କଲେ ଏବଂ ଧୀରେ ଧୀରେ ଅଳିନ୍ଦ ମଧ୍ୟରୁ ଗୁମ୍ଫାର ଦ୍ୱାରମୁହଁକୁ ନେଇଆସିଲେ । ନାରୀମୂର୍ତ୍ତିଟି ଚକ୍ଷୁ ଖୋଲିଲେ; ବହୁବର୍ଷଯାବତ୍ ମନୁଷ୍ୟ ମୁଖ ଦର୍ଶନ କରି ନାହାନ୍ତି; କିଏ ଏମାନେ ? ସୌମ୍ୟବପୁ, ପ୍ରଶାନ୍ତ ମୁଖମଣ୍ଡଳ, ଧନୁର୍ଦ୍ଧାରଣ କରିଛନ୍ତି । ଶରୀରରେ ରାଜକୀୟ ଉତ୍ତରୀୟ । କିଏ ଏହି ରାଜପୁତ୍ର ! ଲକ୍ଷ୍ମଣ ମଧ୍ୟ ପ୍ରଣାମ ଜଣାଇଲେ । ପଛରେ ମହର୍ଷି ଦଣ୍ଡାୟମାନ । ମହର୍ଷିଙ୍କୁ ବହୁସମୟ ନିରୀକ୍ଷଣ କଲେ । ଅତୀତର ସ୍ମୃତି ଫେରି ଆସୁଥାଏ । ସତେଅବା ସଂବିତ୍‌ର ବିଦ୍ୟୁତ୍‌ସ୍ରୋତ । ଏହି ତ ମହର୍ଷି ବିଶ୍ୱାମିତ୍ର ! ଅହଲ୍ୟା ହତବାକ୍ ହୋଇଗଲେ । ରାମ ନିଜର ପରିଚୟ ଦେଲେ - 'ମା, ଋଷିପତ୍ନୀ; ମୁଁ ଅଯୋଧ୍ୟାର ଜ୍ୟେଷ୍ଠ ରାଜପୁତ୍ର, ଏ ମୋର ସାନଭାଇ ସୌମିତ୍ର ଲକ୍ଷ୍ମଣ' । ମହର୍ଷି କହିଲେ; 'ଆମେ ସମସ୍ତେ ଆପଣଙ୍କ ଆଶ୍ରମରେ ଆଜି ଅତିଥି' । ଗୌତମଙ୍କ ଅଭିଶାପ ବିଷୟ ସ୍ମରଣ କରି ଅହଲ୍ୟା ରାମ ଓ ଲକ୍ଷ୍ମଣଙ୍କୁ ସ୍ନେହରେ ଆଲିଙ୍ଗନ କଲେ ।

ରାଘବୌ ତୁ ତଦା ତସ୍ୟାଃ ପାଦୌ ଜଗୃହତୁର୍ମୁଦା ।
ସ୍ମରନ୍ତୀଗୌତମବଚଃ ପ୍ରତିଜଗ୍ରାହ ସା ହି ତୌ ।।

- ରାମାୟଣମ୍ -

ବିଶ୍ୱାମିତ୍ରଙ୍କୁ ପ୍ରଣାମକରି ପଦଧୂଳି ନେଲେ । ଆଖିରୁ ଝରଝର ଲୁହ ବୋହି ଯାଉଥାଏ । ବଦ୍ଧାଞ୍ଜଳିମୁଦ୍ରାରେ ସମସ୍ତଙ୍କୁ ଚାହିଁଥାନ୍ତି । ମହର୍ଷିଙ୍କ ସାଥିରେ ଥିବା ଋଷିବୃନ୍ଦ ଅହଲ୍ୟାଙ୍କର ପଦବନ୍ଦନା କଲେ । ବିଶ୍ୱାମିତ୍ର କହିଲେ, 'ଦେବୀ ଅହଲ୍ୟା ! ଆପଣଙ୍କର କୌଣସି ଅପରାଧ ନାହିଁ । ଆପଣ ନିଷ୍ପାପ । ମହର୍ଷି ଗୌତମ ମଧ୍ୟ ଆପଣଙ୍କ ପ୍ରତୀକ୍ଷାରେ ଅଛନ୍ତି । ମନରୁ ସମସ୍ତ ଗ୍ଲାନି ପୋଛିଦିଅନ୍ତୁ । ରାଜପୁତ୍ରଙ୍କ ସମେତ ଆମ୍ଭମାନଙ୍କର ଆତିଥ୍ୟ ସତ୍କାର କରନ୍ତୁ ।'

ସମସ୍ତେ ସେଠାରେ ଅବସ୍ଥାନ କଲେ । ମହର୍ଷି ଗୌତମ ମଧ୍ୟ ଯଥାସମୟରେ ପହଞ୍ଚିଲେ । ଅହଲ୍ୟାଙ୍କ ମନମଧ୍ୟରୁ ଆଜି ସମସ୍ତ କ୍ରୋଧ, କାମନା, ପଶ୍ଚାତ୍ତାପ, ମୋହ ଅପସରି ଯାଇଛି । ପ୍ରଶାନ୍ତ ହୃଦୟରେ ଆଶ୍ରମଲବ୍ଧ ଫଳମୂଳରେ ସମସ୍ତଙ୍କର ସତ୍କାର କଲେ । ଜ୍ଞାନସତ୍ର ଆରମ୍ଭ ହେଲା । ଯଜ୍ଞଶାଳାରେ ଅହଲ୍ୟା ଗୌତମଙ୍କ ସହିତ କୁଶାସନରେ ବସି ସହଧର୍ମ ପାଳନ କଲେ । ଆଶ୍ରମରେ ନୂତନ ଜୀବନ ସଞ୍ଚାରିତ ହୋଇଗଲା । ଶ୍ରୀରାମଙ୍କ ପଦସ୍ପର୍ଶରେ ଆଜି ଆଶ୍ରମ ଧନ୍ୟ ହୋଇଛି । ଅହଲ୍ୟାଙ୍କ କଳଙ୍କ-ଅପବାଦ ଘୁଞ୍ଚିଯାଇଛି । ବୃକ୍ଷଲତା, ପଶୁପକ୍ଷୀ - ସମସ୍ତେ ସତେଅବା ନୂତନ ଜୀବନ ଲାଭ କରି ଉଲ୍ଲସିତ ହେଲେ । ଲୋକମୁଖରେ ରାମଚନ୍ଦ୍ରଙ୍କ ଅହଲ୍ୟା-ନିସ୍ତାରଣ ଭିନ୍ନ ଭିନ୍ନ ରୂପନେଇ ପ୍ରଚାରିତ ହେଲା । ''ଚରଣସ୍ପର୍ଶରେ ଶିଳାତନୁ ଅହଲ୍ୟା ନିଜର ପୂର୍ବରୂପ ଫେରିପାଇଛନ୍ତି । ଶ୍ରୀରାମ ସ୍ୱୟଂ ଅବତାର । **ନର-ନାରାୟଣ** । ରାମଚନ୍ଦ୍ରଙ୍କୁ କେନ୍ଦ୍ରକରି, ତାଙ୍କରି ପ୍ରଚେଷ୍ଟାରେ ସମଗ୍ର ଜମ୍ବୁଦ୍ୱୀପରେ ଆର୍ଯ୍ୟସଂସ୍କୃତି ସୁରକ୍ଷିତ ହେବ । ସନାତନ ଧର୍ମ ଆଜି ବିପନ୍ନ ନୁହେଁ । ସେ ହିଁ ଯୁଗପୁରୁଷ । ସତ୍ୟ, ନ୍ୟାୟ ଓ ଧର୍ମ ପ୍ରତିଷ୍ଠାପାଇଁ ନୂତନ ଯୁଗର କ୍ରାନ୍ତିକାରୀ ନେତା **ଦାଶରଥି ରାମ** । ବିଶ୍ୱାମିତ୍ରଙ୍କ ମାନସସନ୍ତାନ । ଋଷିମାନେ ଆଶ୍ୱସ୍ତ ହେଲେ ।

### ଉଷା-ଗାୟତ୍ରୀ-ଅହଲ୍ୟା

ଉଷା ସ୍ୱର୍ଗକନ୍ୟା । ତାଙ୍କର ଆଗମନରେ ପ୍ରକୃତି ଓ ପ୍ରାଣିଜଗତ୍ ନୂତନ ଜୀବନ ଲାଭକରି ଉଲ୍ଲସିତ ହୁଏ । ସେ ପୁରନ୍ଧ୍ରୀ, ଧନଦାତ୍ରୀ, ଜ୍ଞାନଦାତ୍ରୀ । ତାଙ୍କୁ ଏକାଧାରରେ ମଘୋନୀ (ଧନଦାତ୍ରୀ, ପ୍ରାଦୁର୍ଯ୍ୟମୟୀ) ଓ ସୂର୍ଯ୍ୟା (ପ୍ରକାଶମୟୀ, ପ୍ରାଣଦାତ୍ରୀ) କୁହାଯାଇଛି । ଏଠାରେ ଲକ୍ଷ୍ୟ କରିବା କଥା, ମଘବା (ଇନ୍ଦ୍ର) ଓ ସୂର୍ଯ୍ୟଙ୍କର ସ୍ତ୍ରୀଲିଙ୍ଗାନ୍ତ ଶବ୍ଦ ଯଥାକ୍ରମେ ମଘୋନୀ ଓ ସୂର୍ଯ୍ୟା । ଉଷାର ପ୍ରଥମ ସ୍ପର୍ଶରେ ପ୍ରତି ପ୍ରାଣରେ ପୁଲକ

ଉରିଯାଏ । ସେ ହିଁ ଆତ୍ମଶକ୍ତିର ପ୍ରେରଣାଦାତ୍ରୀ, ସ୍ୱୟଂ **ଆତ୍ମଶକ୍ତି** । ତାଙ୍କରି ଉଦ୍‌ବୋଧନରେ ଜ୍ଞାନକମଳ ଉନ୍ନିଦ୍ର ହୋଇଥାଏ । ନିତ୍ୟ-ଆଲୋକମୟ-ଦିବ୍ୟଲୋକରୁ ସତେଅବା ନୃତ୍ୟଛନ୍ଦରେ ନାଚି ନାଚି ଏହି ସ୍ୱର୍ଗକନ୍ୟା ଧରାପୃଷ୍ଠକୁ ଆସିଥାନ୍ତି । ସମସ୍ତଙ୍କ ହୃଦୟରେ କର୍ମପ୍ରେରଣା ଭରିଦିଅନ୍ତି । ସେ ହିଁ ହିରଣ୍ୟଗର୍ଭ ସବିତାଙ୍କର ଶକ୍ତିସ୍ୱରୂପିଣୀ, ସ୍ୱୟଂ **ବେଦମାତା** । ସବିତାଙ୍କ ସହିତ ଉଷାଦେବୀଙ୍କ ସମ୍ପର୍କ ନିତ୍ୟ । ଉଷାଙ୍କୁ ସବିତାଙ୍କର ପ୍ରେରଣାତ୍ମକ ଶକ୍ତି, ଭଗ୍ନୀ, କାନ୍ତା, ମାତା, କନ୍ୟା-ବିଭିନ୍ନ ରୂପକଳ୍ପରେ ଚିନ୍ତା କରାଯାଇପାରେ । ସେ ସ୍ୱୟଂ ଗାୟତ୍ରୀ, ପ୍ରାତଃସଂଧ୍ୟାର ଦେବୀ, ସୃଜନଶୀଳା ରାଜସୀ ଶକ୍ତି । ସେଥିପାଇଁ ତାଙ୍କୁ **ବ୍ରହ୍ମାଣୀ** ମଧ୍ୟ କହନ୍ତି । କଲ୍ୟାଣୀ ଉଷାଙ୍କର ଗାୟତ୍ରୀରୂପସତ୍ତା ଅନିର୍ବଚନୀୟ ପ୍ରେରଣାରେ ଆତ୍ମଶକ୍ତିକୁ ଜାଗ୍ରତ କରାଏ । ପ୍ରାତଃକାଳୀନ ସବିତୃଶକ୍ତିଙ୍କର ଏହି ଗାୟତ୍ରୀରୂପସତ୍ତାକୁ ମହର୍ଷିବିଶ୍ୱାମିତ୍ର ଉପଲବ୍ଧି କରି ଗାୟତ୍ରୀ ମନ୍ତ୍ରରେ ଉପସ୍ଥାପନ କରିଛନ୍ତି । ତାଙ୍କରି ସ୍ୱରୂପରେ ହିରଣ୍ୟଗର୍ଭ ପ୍ରଜାପତିଙ୍କର ଆତ୍ମଶକ୍ତି ପ୍ରକାଶ ପାଇଥାଏ । ସେ ହଂସବାହନା, ଅକ୍ଷସୂତ୍ରକମଣ୍ଡଳୁଧାରିଣୀ, ଅରୁଣବର୍ଣ୍ଣା, ଅରୁଣବାସସା ।

‘‘ପୂର୍ବସନ୍ଧ୍ୟା ତୁ ଗାୟତ୍ରୀ ରକ୍ତାଙ୍ଗୀ ରକ୍ତବାସସା
ଅକ୍ଷସୂତ୍ରଧରା ଦେବୀ କମଣ୍ଡଳୁସମନ୍ୱିତା ।
ହଂସସ୍କନ୍ଧସମାରୂଢ଼ା ତଥା ଚ ବ୍ରହ୍ମଦୈବତା
କୁମାରୀ ଋଗ୍‌ବେଦମୁଖୀ ବ୍ରହ୍ମଣା ସହ ଆବହ ।
ଆୟାହି ବରଦେ ଦେବି ! ତ୍ର୍ୟକ୍ଷରେ ବ୍ରହ୍ମବାଦିନି !
ଗାୟତ୍ରି ! ଛନ୍ଦସାଂ ମାତଃ ! ବ୍ରହ୍ମଯୋନେ ନମୋସ୍ତୁତେ ।
ବାଳାଂ ବିଦ୍ୟାଂ ଚ ଗାୟତ୍ରୀଂ ତ୍ର୍ୟକ୍ଷରାଂ ଚତୁରାନନାଂ
ରକ୍ତାମ୍ବରଦ୍ୱୟୋପେତାଂ ଅକ୍ଷସୂତ୍ରଧରାଂ ତଥା ।
କମଣ୍ଡଳୁଧରାଂ ଦେବୀଂ ହଂସବାହନସଂସ୍ଥିତାଂ
ବ୍ରହ୍ମାଣୀଂ ବ୍ରହ୍ମଦୈବତ୍ୟାଂ ବ୍ରହ୍ମଲୋକନିବାସିନୀମ୍ ।’’

ଏଠାରେ ଗାୟତ୍ରୀଙ୍କୁ ବାଳା, ନିତ୍ୟକନ୍ୟକା, କୁମାରୀରୂପେ କଳ୍ପନା କରାଯାଇଛି । ଅହଲ୍ୟା ପ୍ରସଙ୍ଗରେ ସ୍ମରଣୀୟ ଦିଗ ହେଉଛି, ବ୍ରହ୍ମା କୁମାରୀକନ୍ୟାଙ୍କୁ (ଅହଲ୍ୟା) ଗୌତମଙ୍କ ହସ୍ତରେ ଅର୍ପଣ କରିଥିଲେ । ସେ ଗୌତମଙ୍କଦ୍ୱାରା ସମ୍ଭୃତା,

ସଂବର୍ଦ୍ଧିତା ହୋଇଥିଲେ । 'ଗୌତମ' - ଶବ୍ଦ ସବିତୃସତ୍ତାସହିତ ସମ୍ପର୍କିତ [ଗୋ- ରଶ୍ମି, ଦିବ୍ୟ ଚେତନା] । ସୃଜନଶୀଳତାର ସଙ୍କେତ ବହନ କରୁଥିବାରୁ ସ୍ୱୟଂ ହିରଣ୍ୟଗର୍ଭଙ୍କ ପ୍ରତିଭୂ, ପରମଜ୍ଞାନୀ, ତତ୍ତ୍ୱାଶ୍ରୟୀ ଏବଂ ମୋକ୍ଷକାମୀ ଆର୍ଷଚେତନା । ଦିବ୍ୟଦ୍ରଷ୍ଟାର ପ୍ରତିଚ୍ଛବି । ଉଷାଦେବୀ ସବିତୃଦେବଙ୍କ ସମ୍ମୁଖରେ ଅପ୍ସରାତୁଲ୍ୟ ନୃତ୍ୟକରି ଚାଲିଥାନ୍ତି । ସବିତା-ସୂର୍ଯ୍ୟ ତାହାଙ୍କୁ ନିତ୍ୟ ଅନୁସରଣ କରୁଥାନ୍ତି । ଚକ୍ରବାଳର ଊର୍ଦ୍ଧ୍ୱକୁ ସବିତା ଆଗେଇଆସିଲେ, ଉଷା ଅନ୍ତର୍ହିତ ହୋଇଯାନ୍ତି । ସେତେବେଳେ ତାଙ୍କର ମୁଗ୍ଧା ଓ କୁମାରୀରୂପର ବିବର୍ତ୍ତନ ଘଟେ । କ୍ରମେ ଗାୟତ୍ରୀଉଷା ମଧ୍ୟସନ୍ଧ୍ୟାର ସାବିତ୍ରୀରୂପକଳ୍ପକୁ ଗ୍ରହଣ କରନ୍ତି । ସାବିତ୍ରୀ ଯୁବତୀ । ତାଙ୍କୁ ଶ୍ରୀ ଓ ଲକ୍ଷ୍ମୀଭାବରେ ମଧ୍ୟ ଅଭିହିତ କରାଯାଏ । ''ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟାବହୋତ୍ରେ...'' । ସାୟଂକାଳରେ ସେହି ଶକ୍ତିମାତୃକା ସରସ୍ୱତୀରୂପେ ବିବର୍ତ୍ତିତ ହୁଅନ୍ତି । ତାଙ୍କର ସ୍ୱରୂପ ବୃଦ୍ଧା । କାଳପୁରୁଷ ପ୍ରଜାପତିଙ୍କର ରୂପାନ୍ତର ମୂଳରେ ନିହିତ ଥିବା ଆତ୍ମଶକ୍ତି ଯଥାକ୍ରମେ ଗାୟତ୍ରୀ, ସାବିତ୍ରୀ ଓ ସରସ୍ୱତୀ ରୂପରେ ପ୍ରତିଭାତ । **କାଳୋ ହି ପ୍ରଜାପତିଃ** । ଏହି ଶକ୍ତିମାତୃକା ଯଥାକ୍ରମେ ଉଦୀୟମାନ ବାଳସୂର୍ଯ୍ୟ, ମଧ୍ୟାହ୍ନସୂର୍ଯ୍ୟ ଏବଂ ଅସ୍ତାୟମାନ ସୂର୍ଯ୍ୟଙ୍କର ଶକ୍ତିରୂପେ କଳ୍ପିତ । ମଧ୍ୟାହ୍ନ ଓ ସାୟଂକାଳରେ କାଳଶକ୍ତିମାତୃକାଙ୍କର କୁମାରୀରୂପ ନ ଥାଏ । ସତେଅବା ପ୍ରଚଣ୍ଡ ସୂର୍ଯ୍ୟ ଓ ସଂଯମହୀନ ଇନ୍ଦ୍ରକର୍ତ୍ତୃକ ତଦୀୟ କୌମାର୍ଯ୍ୟ ନଷ୍ଟ ହୋଇଯାଇଛି ! ସାୟଂ ସଂଧ୍ୟା [ସରସ୍ୱତୀ] ସତେ ଅବା ଶାଶ୍ୱତ କନ୍ୟାରୂପକୁ [କୁମାରୀ] ଫେରି ପାଇବାପାଇଁ ନୀଳସରସ୍ୱତୀରୂପେ ତପୋନିରତା ରହନ୍ତି । ସେହି ନୀଳସରସ୍ୱତୀ ହେଉଛନ୍ତି ମଧ୍ୟରାତ୍ରିର ସଂଧ୍ୟା, ସ୍ୱୟଂ **ଚାତୁର୍ଥିକା** ମହାମାୟା, ମହାମାତା । ସେହି ସଂଧ୍ୟା ସମସ୍ତଙ୍କ ଦୃଷ୍ଟିପଥରୁ ନିଜକୁ ଅଦୃଶ୍ୟ, ଲୁକ୍କାୟିତ ରଖନ୍ତି । [ବାତଭକ୍ଷା ନିରାହାରା ତପ୍ୟନ୍ତୀ ଭସ୍ମଶାୟିନୀ । **ଅଦୃଶ୍ୟା** ସର୍ବଭୂତାନାମ୍ ଆଶ୍ରମେଽସ୍ମିନ୍ ନିବତ୍‌ସ୍ୟସି ।। ରାମାୟଣମ୍ ] ସତେଅବା ଗୌତମରୂପୀ ତରୁଣସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ବିରହିଣୀ ଓ ସମସ୍ତଙ୍କ ଅଲକ୍ଷ୍ୟରେ ତପସ୍ୱିନୀର ଜୀବନ କଟାଇଥାଆନ୍ତି । ସେହି ଆତ୍ମଶକ୍ତି ତପସ୍ୟାବଳରେ ପୁନଶ୍ଚ ଗାୟତ୍ରୀରୂପେ ବିବର୍ତ୍ତିତ ହୋଇ ସ୍ୱକୀୟ ବ୍ରାହ୍ମୀ ସ୍ଥିତିକୁ ଲାଭ କରନ୍ତି । ମହର୍ଷି ବିଶ୍ୱାମିତ୍ର କାଳଶକ୍ତିର ଏହି ଅଲୌକିକ ରହସ୍ୟୋତ୍ତମ ଭାବକୁ ଉପଲବ୍ଧି କରି ଗାୟତ୍ରୀମନ୍ତ୍ର ଦର୍ଶନ କରିଥିଲେ । ଆଲୋଚକମାନେ ରାମାୟଣକୁ ସବିତୃପ୍ରଧାନ, ଗାୟତ୍ରୀତତ୍ତ୍ୱର ଅନୁବର୍ତ୍ତିତ ରୂପକକଳ୍ପଭିତ୍ତିକ, ଅଧ୍ୟାତ୍ମଗ୍ରନ୍ଥରୂପେ ମଧ୍ୟ ବିବେଚନା କରିଥାନ୍ତି । ଗାୟତ୍ରୀମନ୍ତ୍ରର

ମୂଳରୂପ ଚବିଶ-ଅକ୍ଷର-ବିଶିଷ୍ଟ । 'ଚତୁର୍ବିଂଶତ୍ୟକ୍ଷରା ଗାୟତ୍ରୀ' । ରାମାୟଣରେ ମଧ୍ୟ ଚବିଶହଜାର-ଶ୍ଳୋକ ସନ୍ନିହିତ । [''ଚତୁର୍ବିଂଶତି - ସହସ୍ରାଣି ଶ୍ଳୋକାନାମୁକ୍ତବାନ୍ ଋଷିଃ''- ରାମାୟଣମ୍-ବାଲକାଣ୍ଡେ-୪-୨] ଗ୍ରନ୍ଥକୃତିର ପ୍ରତ୍ୟେକ ପତାକାବିନ୍ଦୁ ଗାୟତ୍ରୀମନ୍ତ୍ରର ପ୍ରତ୍ୟେକ ଅକ୍ଷରବୀଜକୁ ଧାରଣ କରିଛି । ଗାୟତ୍ରୀମନ୍ତ୍ର ଓ ତଦାଖ୍ୟ ଛନ୍ଦର ଦ୍ରଷ୍ଟା ହେଉଛନ୍ତି ମହର୍ଷି ବିଶ୍ୱାମିତ୍ର । ଗାୟତ୍ରୀ-ମନ୍ତ୍ରାନୁରୂପ ରାମାୟଣର ପ୍ରଥମଶ୍ଳୋକ 'ତ' ଅକ୍ଷରରେ ଆରମ୍ଭ । [ ତତ୍‌ସବିତୁର୍ବରେଣୀୟମ୍-ଗାୟତ୍ରୀ ]

'ତପଃସ୍ୱାଧ୍ୟାୟନିରତଂ, ତପସ୍ୱୀ ବାଗ୍‌ବିଦାଂ ବରମ୍ ।
ନାରଦଂ ପରିପପ୍ରଚ୍ଛ, ବାଲ୍ମୀକିର୍ମୁନିପୁଙ୍ଗବମ୍'

[ ରାମାୟଣମ୍-୧-୧-୧]

ମହର୍ଷି ବିଶ୍ୱାମିତ୍ର ଶ୍ରୀରାମଙ୍କଠାରେ ସମସ୍ତ ମାନସସିଦ୍ଧି ସୁନ୍ୟସ୍ତକରି ତାଙ୍କୁ କ୍ରାନ୍ତିପୁରୁଷ ଭାବରେ ଗଢ଼ି ତୋଳିଛନ୍ତି । ତାଙ୍କର ସମସ୍ତ ଚିନ୍ତାଧାରାକୁ ଶ୍ରୀରାମ ସ୍ୱକୀୟ କାର୍ଯ୍ୟାବଳୀରେ ରୂପାୟିତ କରିଛନ୍ତି । ସେହି ପରମ କାରୁଣିକ ରାମଚନ୍ଦ୍ରଙ୍କୁ ଆଦର୍ଶ-ନାୟକରୂପେ ଗ୍ରହଣ କରି ପ୍ରାଚେତସ ବାଲ୍ମୀକି ଶ୍ଳୋକଛନ୍ଦଃରେ (ଅନୁଷ୍ଟୁପ୍) ରାମାୟଣ ଗ୍ରନ୍ଥ ରଚନା କରିଛନ୍ତି । ସତେଅବା ତ୍ରିପାଦୀ ଗାୟତ୍ରୀ ଚତୁଷ୍ପାଦୀଶ୍ଳୋକରେ ବିବର୍ତ୍ତିତ ହୋଇ ପ୍ରବୋଧିନୀପ୍ରେରଣାକୁ ଜଗତ୍‌ର ମଙ୍ଗଳପାଇଁ ସ୍ନେହ ଓ କରୁଣାରେ ରୂପାନ୍ତରିତ କରିଦେଉଛନ୍ତି । ପ୍ରାତଃସଂଧ୍ୟାର ଦେବୀ ଗାୟତ୍ରୀ ପ୍ରସଙ୍ଗକ୍ରମେ ସତେଅବା ପ୍ରାତଃସ୍ମରଣୀୟା ଶାଶ୍ୱତକନ୍ୟା ଅହଲ୍ୟାରୂପେ ରୂପାନ୍ତରିତ ଓ ଉଦ୍‌ଗୀତ ହୋଇଛନ୍ତି । [ପଞ୍ଚକନ୍ୟାଃ ସ୍ମରେନ୍ନିତ୍ୟଂ ମହାପାତକନାଶନମ୍ । ]

ଅହଲ୍ୟା ହେଉଛନ୍ତି ସ୍ୱୟଂ ଗାୟତ୍ରୀଙ୍କର ମାନବୀକରଣ ରୂପସତ୍ତା । ସ୍ୱୟଂ ବାଣୀ/ ବାଗ୍‌ଦେବୀ; ଘଟଣାପ୍ରବାହରେ ଅଭିଶପ୍ତା । ଗାୟତ୍ରୀ-ପୁରଶ୍ଚରଣରେ ଶାପବିମୋଚନ-ପଦ୍ଧତି ପ୍ରଚଳିତ । ବେଦର ବର୍ଣ୍ଣନାରୁ ଜଣାଯାଏ, ବାଣୀ ପଣିନାମକ ଅସୁର ମେଳରେ ପତିତା ହୋଇଯାଇଥିଲେ । ସରମା- ପଣି-ସମ୍ବାଦସୂକ୍ତରୁ ଏହା ଜଣାପଡ଼େ । ସେହିପରି ଭାବରାଜ୍ୟରେ **ବୈଖରୀ** ବାଣୀ ମନୋଗତ **ପରା** ଭାବବୃତ୍ତିକୁ ପ୍ରକାଶ କରି ନ ପାରି ମଧ୍ୟ ଅଭିଶପ୍ତା । ଏହାର ଅର୍ଥ ହେଉଛି, ଅନ୍ତର୍ନିହିତ ଭାବବୃତ୍ତିକୁ ବାଣୀ (ବାକ୍) ସର୍ବଦା ପ୍ରକାଶ କରିପାରେ ନାହିଁ । ତଦ୍ୱାରା ପଦ (ବାକ୍) ଏବଂ ପଦାର୍ଥ (ବାଗର୍ଥ) ମଧ୍ୟରେ ଥିବା ନିତ୍ୟସମ୍ବନ୍ଧ ବ୍ୟାହତ ହୁଏ । ସେଥିପାଇଁ ମହାକବି କାଳିଦାସ ଯଥାର୍ଥ ଶବ୍ଦର ପ୍ରୟୋଗ-ସାମର୍ଥ୍ୟ ଲାଭ କରିବା ପାଇଁ ବାଗର୍ଥ

ସଦୃଶ ନିତ୍ୟ-ସମ୍ବନ୍ଧିତ ଅନ୍ୟୋନ୍ୟାଶ୍ରୟୀ ଶିବପାର୍ବତୀଙ୍କୁ (ଅର୍ଦ୍ଧନାରୀଶ୍ୱରମୂର୍ତ୍ତିଙ୍କୁ) ସ୍ତୁତିକରି କହିଛନ୍ତି -

''ବାଗର୍ଥାବିବସଂପୃକ୍ତୌ ବାଗର୍ଥପ୍ରତିପତ୍ତୟେ
ଜଗତଃପିତରୌ ବନ୍ଦେ ପାର୍ବତୀପରମେଶ୍ୱରୌ''*

[ରଘୁବଂଶମ୍-୧-୧ ]

ଅହଲ୍ୟା-ଚରିତରେ ଗାୟତ୍ରୀଙ୍କ ରୂପକଳ୍ପ ପ୍ରତିଫଳିତ । ସେ ମଧ୍ୟ ଅଭିଶପ୍ତ ଏବଂ ଶ୍ରୀରାମଙ୍କ ସାନ୍ନିଧ୍ୟରେ ଶାପମୁକ୍ତ । ରାମାୟଣ ହେଉଛି ସବିତାପ୍ରଧାନ କାବ୍ୟ । ସ୍ୱୟଂ ରାମଚନ୍ଦ୍ର ସୂର୍ଯ୍ୟବଂଶର ମହାନ୍ ପ୍ରତିଭୂ ।

ବୈବସ୍ୱତ ମନୁବଂଶର ବୈଜୟନ୍ତୀ; ଗାୟତ୍ରୀ ମନ୍ତ୍ରର ଆରାଧ୍ୟଦେବତା ମଧ୍ୟ ସବିତା । ଆଦିତ୍ୟ-ହୃଦୟ ଜପକରି ଶ୍ରୀରାମ ଅପୂର୍ବ ଶକ୍ତି ଲାଭ କରିଥିଲେ ଏବଂ ପରାକ୍ରମୀ ରାବଣକୁ ପରାହତ କରିବାପାଇଁ ସମର୍ଥ ହୋଇଥିଲେ । ମହର୍ଷି ବିଶ୍ୱାମିତ୍ର ସବିତୃ-ଉପାସନାର ସମସ୍ତ ସିଦ୍ଧି ଶ୍ରୀରାମଙ୍କୁ ଅର୍ପଣ କରିଥିଲେ; ତାଙ୍କର ଇଚ୍ଛାଶକ୍ତି ରାମଙ୍କଠାରେ କ୍ରିୟାଶକ୍ତିରେ ପ୍ରତିଫଳିତ ହୋଇଛି । ରାମାୟଣରେ ବର୍ଣ୍ଣିତ ଚାରୋଟି ନାରୀଚରିତ୍ରର ତତ୍ତ୍ୱାତ୍ମକ ବୈଶିଷ୍ଟ୍ୟ ରହିଛି; ସେମାନେ ହେଲେ, ଯଥାକ୍ରମେ ଅହଲ୍ୟା, ସୀତା, ଅନସୂୟା ଏବଂ ତ୍ରିଜଟା । ସେମାନଙ୍କ ଗୁଣସତ୍ତାକୁ ବିଚାରକଲେ ଜଣାଯାଏ, ଅହଲ୍ୟା ପ୍ରାତଃସଂଧ୍ୟାର ଦେବୀ (ଗାୟତ୍ରୀ), ସୀତା ମଧ୍ୟାହ୍ନ ସଂଧ୍ୟାର ଦେବୀ (ସାବିତ୍ରୀ), ଅନସୂୟା ସାୟଂସଂଧ୍ୟାର ଦେବୀ (ସରସ୍ୱତୀ) ଏବଂ ତ୍ରିଜଟା ମଧ୍ୟରାତ୍ରର ଦେବୀ (ଚାତୁର୍ଥିକା ନୀଳସରସ୍ୱତୀ) । ଏମାନଙ୍କ ମଧ୍ୟଦେଇ ଯଥାକ୍ରମେ ଇଚ୍ଛାଶକ୍ତି, କ୍ରିୟାଶକ୍ତି, ଜ୍ଞାନଶକ୍ତି ଓ ତପଃଶକ୍ତି ଋଦ୍ଧିମନ୍ତ ହୋଇଛି ।

---

* କାଳିଦାସ ଶୈବ ଥିଲେ । ତାଙ୍କର ଶୈବଚିନ୍ତା ବ୍ରହ୍ମଭାବର ଦ୍ୟୋତକ । ଶିବ ଓ ପାର୍ବତୀଙ୍କୁ ଚରିତ୍ରରୂପେ ଚିତ୍ରଣକରି କୁମାରସମ୍ଭବମ୍ କାବ୍ୟ ଲେଖିଛନ୍ତି । ଅନ୍ୟତ୍ର ନିଜ ରଚିତ ଗ୍ରନ୍ଥଗୁଡ଼ିକର କାବ୍ୟମୁଖରେ ଶିବପାର୍ବତୀଙ୍କୁ ବନ୍ଦନା କରିଛନ୍ତି । ଶିବ ହେଉଛନ୍ତି ପରମେଶ୍ୱର । ରଘୁବଂଶର ପ୍ରଥମ ଶ୍ଳୋକରେ ମହାକବି ଯେଉଁ ନମସକ୍ରିୟା ପ୍ରକାଶ କରିଛନ୍ତି, ତାହା ସତ୍‌କାବ୍ୟଲକ୍ଷଣ ଦୃଷ୍ଟିରୁ ମଧ୍ୟ ଅନୁଧେୟ । ''ବାକ୍ (ବାଣୀ) ଓ ଅର୍ଥ (ପଦାର୍ଥ) ମଧ୍ୟରେ ସମ୍ବନ୍ଧ ନିତ୍ୟ ।'' ପଦ ଓ ଅର୍ଥର ସମ୍ବନ୍ଧକୁ ମହାଭାଷ୍ୟରେ ମଧ୍ୟ ନିତ୍ୟ କୁହାଯାଇଛି । (ନିତ୍ୟେ ଶବ୍ଦାର୍ଥ ସମ୍ବନ୍ଧେ) । ପଦ ଓ ଅର୍ଥସଦୃଶ ନିତ୍ୟସମ୍ବନ୍ଧିତ, ଅନ୍ୟୋନ୍ୟାଶ୍ରୟୀ ହେଉଛନ୍ତି ଶିବପାର୍ବତୀ । ଯଥାର୍ଥ ଶବ୍ଦପ୍ରୟୋଗର ସାମର୍ଥ୍ୟ ଲାଭ କରିବା ପାଇଁ ଜଗତ୍‌ର ପିତାମାତା ସଦୃଶ ଶିବପାର୍ବତୀଙ୍କୁ କାଳିଦାସ କାବ୍ୟମୁଖରେ ବନ୍ଦନା କରିଛନ୍ତି ।

ଅହଲ୍ୟାଙ୍କର ଆଶ୍ରମପର୍ଯ୍ୟନ୍ତ ଶ୍ରୀରାମଙ୍କୁ ନେବାମୂଳରେ ମହର୍ଷିଙ୍କର ଉଦ୍ଦେଶ୍ୟ ଗୁରୁତ୍ୱପୂର୍ଣ୍ଣ । ରାମ ଓ ଲକ୍ଷ୍ମଣ ତପସ୍ୱିନୀ ଅହଲ୍ୟାଙ୍କର ପଦବନ୍ଦନା କରିଛନ୍ତି, ଅହଲ୍ୟା ତାଙ୍କୁ ଅତ୍ୟନ୍ତ ସ୍ନେହରେ ଆଲିଙ୍ଗନ କରିଛନ୍ତି: ଆତିଥ୍ୟ ପ୍ରଦାନ କରିଛନ୍ତି । ଶ୍ରୀରାମ ମଧ୍ୟ ତପସ୍ୱିନୀ ଗାୟତ୍ରୀମାତୃକାଙ୍କର ଆଶୀର୍ବାଦ ଓ ରକ୍ଷାକବଚ ଲାଭ କରିଛନ୍ତି । ଅନ୍ୟପକ୍ଷରେ ସମାଜଦୃଷ୍ଟିରୁ ପତିତା ଅହଲ୍ୟାଙ୍କର ତ୍ରାଣକର୍ତ୍ତାଭାବେ ବିବେଚିତ ହୋଇଛନ୍ତି । 'ଜନସାଧାରଣ ତାଙ୍କୁ ପତିତ- ପାବନଭାବେ ଲକ୍ଷ୍ୟ କରିଛନ୍ତି'; ଏହା ଘଟଣାବଳୀର ବହି ରଙ୍ଗ । ମିଥିଳା ଯିବାପୂର୍ବରୁ ସାକ୍ଷାତ୍ ଗାୟତ୍ରୀକଳ୍ପା ଅହଲ୍ୟାଙ୍କର ଶୁଭାଶିଷରେ ଶ୍ରୀରାମଙ୍କ ଅନ୍ତର୍ନିହିତ ଆତ୍ମଶକ୍ତି ଜାଗ୍ରତ ହୋଇଯାଇଛି, ସତେଅବା ସଂବିତ୍‌ର ତଡ଼ିତ୍-ସ୍ପର୍ଶ; ତାହାହିଁ ଅନ୍ତରଙ୍ଗ ଉପଲବ୍ଧି । [ରାଘବୌ ତୁ ତଦା ତସ୍ୟାଃ ପାଦୌ ଜଗୃହତୁର୍ମୁଦା, ସ୍ମରନ୍ତୀ ଗୌତମବଚଃ ପ୍ରତିଜଗ୍ରାହ ସା ହି ତୌ ।।] - ରାମ ଓ ଲକ୍ଷ୍ମଣ ଭକ୍ତିପୂର୍ବକ ଅହଲ୍ୟାଙ୍କର ପାଦ-ଗ୍ରହଣ କଲେ, ବନ୍ଦନା କଲେ ଏବଂ ଗୌତମଙ୍କ ବଚନ ସ୍ମରଣକରି ଅହଲ୍ୟା ସେମାନଙ୍କୁ ସ୍ନେହରେ ଆଲିଙ୍ଗନ କଲେ । ତଦ୍ଦ୍ୱାରା ରାମ ଓ ଲକ୍ଷ୍ମଣ ମାତୃକରୁଣାର ରକ୍ଷାକବଚ ଲାଭ କରିଥିଲେ । ଅହଲ୍ୟାଙ୍କର ତପସ୍ୱିନୀରୂପ ଉଲ୍ଲେଖଯୋଗ୍ୟ । ''ସେ ତପଃଜ୍ୟୋତିରେ ଜ୍ୟୋତିର୍ମୟୀ ଓ ଐଶ୍ୱର୍ଯ୍ୟଶାଳିନୀ ଲକ୍ଷିତ ହେଉଥାନ୍ତି । ସବୁଲୋକକୁ ତଦୀୟ ଜ୍ୟୋତିଃ ସ୍ପର୍ଶ କରୁଥିଲେ ମଧ୍ୟ; ଦେବତା, ଅସୁର କିମ୍ବା କୌଣସି ଜୀବଜଗତ୍ କେହି ତାହା ଲକ୍ଷ୍ୟ କରିପାରୁ ନ ଥାନ୍ତି । ସତେଅବା ବିଧାତା ଅତିପ୍ରଯତ୍ନପୂର୍ବକ ଏହି ଅକଳ୍ପନୀୟ ଦିବ୍ୟରହସ୍ୟୋତ୍ତମା ଅହଲ୍ୟାଙ୍କୁ କ୍ଷଣେ କ୍ଷଣେ ନିର୍ମାଣ ଓ ସଂଚୟନ କରୁଥାନ୍ତି । ଧୂମପରିବୃତ୍ତ ଅଦୃଶ୍ୟ ଅଗ୍ନିଶିଖା । ତୁଷାର ଆବରଣ ମଧ୍ୟରେ ସତେଅବା ପିନଦ୍ଧ ପୂର୍ଣ୍ଣଚନ୍ଦ୍ରର ରଶ୍ମି ଲୁକ୍କାୟିତ । ଜଳମଧ୍ୟରେ ପ୍ରଦୀପ୍ତ ସୂର୍ଯ୍ୟଙ୍କର ପ୍ରତିବିମ୍ବ / ଯେଉଁ ପ୍ରତିବିମ୍ବନ ରଶ୍ମିକୁ କେହି ଅବଧାରଣ କରିପାରିବେ ନାହିଁ, ସ୍ପର୍ଶ କରିପାରିବେ ନାହିଁ । ଶ୍ରୀରାମଙ୍କ ଦର୍ଶନପୂର୍ବରୁ ତିନିଲୋକର ଜୀବଜଗତ୍, ଦେବତା, ଅସୁର ଅଥବା ମନୁଷ୍ୟ - କେହି ତାଙ୍କର ଦର୍ଶନ ପାଇପାରିବେ ନାହିଁ । ତିନିଲୋକର ''ଅଦୃଷ୍ଟପୂର୍ବା, ଅନବଧାର୍ଯ୍ୟା, ଅଜ୍ଞେୟା, ଦୁର୍ନିରୀକ୍ଷ୍ୟା, ଅନ୍ତର୍ଜ୍ୟୋତିସମ୍ପନ୍ନା ତପଃସିଦ୍ଧି''-''ଯାହାଙ୍କର ପ୍ରଥମଦର୍ଶନ ଲାଭକରିବେ କୌଶଲ୍ୟାନନ୍ଦନ ରାମଚନ୍ଦ୍ର, ଯାହାଙ୍କର ପ୍ରଥମ ଦୃଷ୍ଟିସମ୍ପାତର କାରୁଣ୍ୟ ଜଳରେ ଅଭିଷ୍ନାତ ହେବେ କିଶୋର ରାମ । ସତେଅବା ରହସ୍ୟୋତ୍ତମ ମହାବିଦ୍ୟାର ସିଦ୍ଧି, ଯାହାକୁ ସ୍ୱୟଂ ଭବିତବ୍ୟର ବିଧାତା ଶ୍ରୀରାମଙ୍କ ଉଦ୍ଦେଶ୍ୟରେ ସାଇତି ରଖିଛନ୍ତି ।''

ସେହି ସିଦ୍ଧିମୟୀ ମହାବିଦ୍ୟାଙ୍କୁ ମହର୍ଷିବିଶ୍ୱାମିତ୍ରଙ୍କ ନିର୍ଦ୍ଦେଶରେ ନିଜମଧଙ୍କୁ ପ୍ରପନ୍ନଚିତ୍ତରେ ଚୟନ କରି ନେଉଛନ୍ତି କାରୁଣିକ ରଘୁନନ୍ଦନ । ତଦୀୟା ତପଃପ୍ରଭାବା ଇଚ୍ଛାଶକ୍ତି ଶ୍ରୀରାମଙ୍କଠାରେ କ୍ରିୟାଶକ୍ତିରେ ରୂପାନ୍ତରିତ ହେବେ । ଗାୟତ୍ରୀକଳ୍ପା ଅହଲ୍ୟାଙ୍କ ଶୁଭାଶିଷର ଉତ୍ତରଣରେ ସେ ଲାଭକରିବେ **ସାବିତ୍ରୀକଳ୍ପା ସୀତାଙ୍କୁ ।**

ଦଦର୍ଶ ଚ ମହାଭାଗାଂ ତପସାଦ୍ୟୋତିତପ୍ରଭାମ୍ ।
ଲୋକୈରପି ସମାଗମ୍ୟ ଦୁର୍ନିରୀକ୍ଷ୍ୟାଂ ସୁରାସୁରୈଃ ।।
ପ୍ରଯତ୍ନନିର୍ମିତାଂ ଧାତ୍ରା ଦିବ୍ୟାଂ ମାୟାମୟୀମିବ ।
ଧୂମେନାଭିପରୀତାଙ୍ଗୀଂ ଦୀପ୍ତାମଗ୍ନିଶିଖାମିବ ।।
ସତୁଷାରାବୃତାଂ ସାଭ୍ରାଂ ପୂର୍ଣ୍ଣଚନ୍ଦ୍ରପ୍ରଭାମିବ ।
ମଧ୍ୟେଽମ୍ଭସୋ ଦୁରାଧର୍ଷାଂ ଦୀପ୍ତାଂ ସୂର୍ଯ୍ୟପ୍ରଭାମିବ ।।
ସା ହି ଗୌତମବାକ୍ୟେନ ଦୁର୍ନିରୀକ୍ଷ୍ୟା ବଭୂବ ହ ।
ତ୍ରୟଣାମପି ଲୋକନାଂ ଯାବଦ୍‌ରାମସ୍ୟଦର୍ଶନମ୍ ।। [- ରାମାୟଣମ୍ -]

**ରାମାୟଣରେ କାହିଁକି ?**

ବିଶ୍ୱାମିତ୍ରଙ୍କ ସମେତ ବାଲ୍ମୀକିଙ୍କର ମହତ୍ ଉଦ୍ଦେଶ୍ୟ ରାମାୟଣରେ ଲକ୍ଷଣୀୟ । ମହର୍ଷି ବାଲ୍ମୀକି ରାମୟଣଗ୍ରନ୍ଥରେ ବିଶ୍ୱାମିତ୍ରଙ୍କ ମୁଖରେ ଅହଲ୍ୟା-ଉପାଖ୍ୟାନଟି ସଂଯୋଜିତ କରିଛନ୍ତି । ବହିରଙ୍ଗ ଦୃଷ୍ଟିରୁ ବିଚାର କଲେ ଏହି ଆଖ୍ୟାନର ଆବଶ୍ୟକତା ବିବଦମାନ ଲକ୍ଷିତ ହୁଏ । ହୁଏତ ନ ଦେଇଥିଲେ ଚଳିଥାନ୍ତା; କିନ୍ତୁ ଭୃଗୁବଂଶୀୟ ବାଲ୍ମୀକି ମଧ୍ୟ ବିଶ୍ୱାମିତ୍ରଙ୍କ ସଦୃଶ ସମାଜରେ ସଂସ୍କାରପ୍ରୟାସୀ ଥିଲେ । ରାମକଥା ପ୍ରାଚୀନ ଜନଶ୍ରୁତି । ତାହାକୁ କାବ୍ୟରୂପେ ଚୟନ କଲେ ପ୍ରାଚେତସ ବାଲ୍ମୀକି ଓ ପରବର୍ତ୍ତୀ ସମୟରେ ମହର୍ଷି ଚ୍ୟବନ । ବାଲ୍ମୀକିଙ୍କର କବିହୃଦୟ ଜମ୍ବୁଦ୍ୱୀପର ସାମାଜିକ ଓ ରାଜନୈତିକ ଅବସ୍ଥାରେ ବିଗଳିତ ହୋଇଯାଇଛି । ଦୁର୍ବଳ ପ୍ରତି ସବଳର ଅତ୍ୟାଚାର; ଶାସନତନ୍ତ୍ରରେ ବ୍ୟଭିଚାର, କର୍ତ୍ତବ୍ୟପରାଙ୍ମୁଖତା, ନାରୀମାନଙ୍କ ପ୍ରତି ପ୍ରଲୁବ୍ଧ ଦୃଷ୍ଟିଭଙ୍ଗୀ, ସାମାଜିକ ଓ ଶାସନତାନ୍ତ୍ରିକ ବିଲକ୍ଷଣ - ଏହିସବୁ ଦୁର୍ଗତିର ପ୍ରତିକାର ପାଇଁ ଲୋକମାନଙ୍କ ସମ୍ମୁଖରେ ସେ ଏକ ଆଦର୍ଶମୟ ଦର୍ପଣ ରଖିବାକୁ ଇଚ୍ଛାକରି 'ରାମାୟଣମ୍' ରଚନା କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଏହି କାବ୍ୟକୁ ପଢ଼ିବେ, ଏହି ଭୂଖଣ୍ଡକୁ ହୃଦୟରେ ଭଲପାଇବେ, ସ୍ୱାର୍ଥପର କାର୍ପଣ୍ୟକୁ ଦୂରକରି ଉଦାର ସାମାଜିକ

ଦାୟିତ୍ୱ ଝଲସିଉଠିବ, ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମିପ୍ରତି ମମତ୍ୱ ଆସିବ; ବ୍ୟକ୍ତି-ପରିବାର-ସମାଜ ଓ ଶାସନତନ୍ତ୍ରରେ ଆଦର୍ଶ ପ୍ରତିବିମ୍ବିତ ହେଉଥିବ, କାବ୍ୟିକ ମୂଲ୍ୟବୋଧ ସର୍ବକାଳିକ ଓ ସାର୍ବଜନୀନ ହୋଇଥିବ - ଏହାହିଁ ଉଦ୍ଦେଶ୍ୟ । କିଏ ସେହି ବ୍ୟକ୍ତି, ଯାହାର ଚରିତାବଳୀଦର୍ପଣରେ ନିଜର ମୁହଁ ଦେଖି ମନୁଷ୍ୟ ନିଜର ଆଚାରବିଚାର ସ୍ଥିର କରିବ; କିଏ ସେହି ପଥପ୍ରଦର୍ଶକ ଧ୍ରୁବତାରା; କ୍ରାନ୍ତିପୁରୁଷ ? ତପସ୍ୱୀ ବାଲ୍ମୀକି ଏହି ପ୍ରଶ୍ନ ପଚାରିଛନ୍ତି ତପଃସ୍ୱାଧ୍ୟାୟନିରତ ଦେବର୍ଷି ନାରଦଙ୍କୁ । ତାଙ୍କର ପିପୃଚ୍ଛିଷା ସ୍ମରଣୀୟ ।

''କୋନ୍ୱସ୍ମିନ୍ ସାଂପ୍ରତଂଲୋକେ ଗୁଣବାନ୍ କଶ୍ଚବୀର୍ଯ୍ୟବାନ୍
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ ସତ୍ୟବାକ୍ୟୋ ଦୃଢ଼ବ୍ରତଃ ।
ଚାରିତ୍ରେଣ ଚ କୋଯୁକ୍ତଃ ସର୍ବଭୂତେଷୁ କୋ ହିତଃ
ବିଦ୍ୱାନ୍ କଃ କଃ ସମର୍ଥଶ୍ଚ କଶ୍ଚୈକପ୍ରିୟଦର୍ଶନଃ ।
ଆତ୍ମବାନ୍ କୋ ଜିତକ୍ରୋଧୋ ଦ୍ୟୁତିମାନ୍ କୋଽନସୂୟବଃ
କସ୍ୟ ବିଭ୍ୟତି ଦେବାଶ୍ଚ ଜାତରୋଷସ୍ୟ ସଂଯୁଗେ'' [- ରାମାୟଣମ୍ -]

''ହେ ପୂଜ୍ୟ ଦେବର୍ଷି, ସଂପ୍ରତି ଏହି ଭୂମଣ୍ଡଳରେ କିଏ ସେହି ବ୍ୟକ୍ତି, ଯିଏ ଏକାଧାରରେ ଗୁଣବାନ୍, ବଳଶାଳୀ, ଧର୍ମଜ୍ଞ, କୃତଜ୍ଞ, ସତ୍ୟବାନ୍, ଦୃଢ଼ସଂକଳ୍ପ, ସଚ୍ଚରିତ୍ର, ସର୍ବପ୍ରାଣୀହିତକାରୀ, ଯଥାର୍ଥବିଦ୍ୱାନ୍, ସମର୍ଥ, ଅତ୍ୟନ୍ତ ମନୋରମ, ଆତ୍ମଜ୍ଞ, ଜିତକ୍ରୋଧ, ପ୍ରଭାବଶାଳୀ, ଉଦାରଚରିତ ଏବଂ କ୍ରୁଦ୍ଧ ହେଲେ ଯୁଦ୍ଧକ୍ଷେତ୍ରରେ ଯାହାଙ୍କୁ ଦେବତାମାନେ ମଧ୍ୟ ଭୟ କରନ୍ତି''; କିଏ ସେହି ମହାନ୍ ବ୍ୟକ୍ତି ଯାହାଙ୍କୁ ଆଲମ୍ବନ କରି ମୁଁ ମୋ ହୃଦୟର କାରୁଣ୍ୟସମ୍ପୃକ୍ତ କବିତା ଗାନ କରିବି ?

ଦିବ୍ୟଦ୍ରଷ୍ଟା ବାଲ୍ମୀକି ଦେବଲୋକରୁ ଚରିତ୍ର ଖୋଜି ନାହାନ୍ତି । ଦେବତାମାନଙ୍କର ଯୁଗନ୍ଧର ପର୍ଯ୍ୟାୟ ଶେଷ ହୋଇଯାଇଛି । ବାସ୍ତବକ୍ଷେତ୍ରରେ ଦେବତା ଓ ଅସୁର-ଉଭୟଗୋଷ୍ଠୀ ମଧ୍ୟରେ ଅଧଃପତନ ଦେଖାଦେଇଛି । ସେମାନଙ୍କ ଲୁପ୍ତଗୌରବର ଭସ୍ମ ଉପରେ ଶୁଭଙ୍କର ମାନବିକତାର ଅଙ୍କୁରୋଦ୍‌ଗମ ହୋଇଛି । ଦେବତାମାନେ ବିଳାସବ୍ୟସନ ମଧ୍ୟରେ ଆତ୍ମସ୍ଥିତି ଓ ଗୌରବ ହରାଇଛନ୍ତି । ଅସୁରମାନଙ୍କଦ୍ୱାରା ସେମାନେ ନିର୍ଜିତ । ଅସୁରମାନେ ସ୍ୱାର୍ଥପର ଭୋଗଲିପ୍ସାପାଇଁ ଜଗତ୍‌କୁ କବଳିତ କରିନେଲେଣି । ନିଷ୍କରୁଣ ଚିତ୍ତରେ ସେମାନେ ଘୋଷଣା କରୁଛନ୍ତି ''ବୀରଭୋଗ୍ୟା

ବସୁନ୍ଧରା'' । ସମାଜରେ ଥିବା ଦୁର୍ବଳ ଓ ନିରୀହ ପ୍ରଜାବୃନ୍ଦ ତ୍ରାହି ତ୍ରାହି ଡାକୁଛନ୍ତି । ଆଉ ନାରୀସମାଜ - ଅତ୍ୟାଚାର, ପ୍ରଲୋଭନ ଅଥବା ଧର୍ଷଣର ଶରବ୍ୟ, ଭୟବିହ୍ୱଳିତ । ଧରିତ୍ରୀ ଥରିଉଠୁଛି; ପ୍ରକୃତିମାତା କାତର ଓ ସଂକୁଚିତ ହୋଇଯାଉଛନ୍ତି ।

ତଥାକଥିତ ରାଜର୍ଷି ଓ ବ୍ରହ୍ମର୍ଷିମାନେ ? - ସେମାନେ ଦୟନୀୟଭାବରେ ଭାଗ୍ୟବାଦୀ ହୋଇଯାଇଛନ୍ତି । ଅଧ୍ୟାତ୍ମବିଦ୍ୟା ଓ ବୈଷୟିକବିଦ୍ୟାର ସମନ୍ୱୟରେ ବ୍ୟକ୍ତି ଏବଂ ସମାଜ ସମୃଦ୍ଧ ହୁଏ । ଏଥିପାଇଁ କୁହାଯାଇଛି ''ଦ୍ୱେ ବିଦ୍ୟେ ଅଧୀତବ୍ୟେ'' । ଯେଉଁମାନେ କେବଳ ଅଧ୍ୟାତ୍ମବିଦ୍ୟାରେ ରତ ରହି ବାସ୍ତବଜ୍ଞାନ ହରାନ୍ତି, ଭୌତିକ ଉନ୍ନତିପ୍ରତି ଉଦାସୀନ ହୋଇଥାନ୍ତି, ସେମାନେ ନିଜର ତଥା ସମାଜର ସୁରକ୍ଷା ହରାଇଥାନ୍ତି । ଅଧ୍ୟାତ୍ମଜ୍ଞାନର ଦ୍ୱାହିରେ ମିଥ୍ୟାକଳ୍ପ ସମସ୍ତଙ୍କୁ ଭାଗ୍ୟବାଦୀ କରିଦିଏ । କେବଳ ଭୌତିକବିଦ୍ୟାରେ ନିରତବ୍ୟକ୍ତି କାମନାବାସନାର ବଶବର୍ତ୍ତୀ ହୋଇ ପରିପାର୍ଶ୍ୱର ସ୍ଥିତିକୁ ଦୟନୀୟ କରିଦିଅନ୍ତି । **ଜ୍ଞାନବିହୀନ କର୍ମ କେବଳ ଉତ୍ପୀଡ଼ନ ଅଥବା ମୋହ । କର୍ମ-ବିହୀନ ଜ୍ଞାନ ନିରର୍ଥକ, ବନ୍ଧ୍ୟ ।** ସମଗ୍ର ଜମ୍ବୁଦ୍ୱୀପରେ ସେହି ସମନ୍ୱୟର (ଜ୍ଞାନ ଓ କର୍ମର) ଅଭାବ ଘଟିଛି । ସେମାନେ ସମତ୍ୱ ହରାଇବା ହେତୁ ନିଷ୍କ୍ରିୟ ହୋଇଛନ୍ତି । ସର୍ବତ୍ର ଆତ୍ମଗ୍ଲାନି, ନିରୁପାୟଭାବର ହତାଶା । ସଂଯମ ଓ ସୁରକ୍ଷାର ଅଭାବରୁ ଦେବସଂସ୍କୃତି ପରାହତ । ଭୋଗ ଓ ଆତ୍ମକୈନ୍ଦ୍ରିକ ସ୍ୱାର୍ଥହେତୁ ମନୁବଂଶୀ ପ୍ରଶାସକମାନେ ହୀନବୀର୍ଯ୍ୟ । ଦୈତ୍ୟ ଓ ଅସୁରପ୍ରଭୃତି ଅପଶକ୍ତି ପ୍ରବଳ ହୋଇଉଠିଛି । ଆର୍ଯ୍ୟସଂସ୍କୃତି ଓ ସନାତନଧର୍ମ ବିପର୍ଯ୍ୟସ୍ତ ହୋଇଯାଉଛି ।

ଏହି ପରିପ୍ରେକ୍ଷୀରେ ଚିରବିପ୍ଳବୀ ମହର୍ଷି ବିଶ୍ୱାମିତ୍ର ଯଥାର୍ଥ ଯୁଗପୁରୁଷଙ୍କୁ ଚିହ୍ନି ତାଙ୍କରିଠାରେ ଗୁରୁଦାୟିତ୍ୱ ଅର୍ପଣ କରିଛନ୍ତି । ନିଜର ତପୋଲବ୍ଧ ସମସ୍ତ ସିଦ୍ଧି ଏବଂ ଅସ୍ତ୍ରଜ୍ଞାନ ସେ ଶ୍ରୀରାମଙ୍କୁ ପ୍ରଦାନ କରିଛନ୍ତି । ସେ ହିଁ ଉଦ୍ଧାରକର୍ତ୍ତାଭାବେ ଉତ୍ତରିତ । ତପୋବନ, ସଂସ୍କୃତି, ଅଭିଶପ୍ତା ଅହଲ୍ୟା, ଅପହୃତା ସୀତା, ସ୍ଖଳିତ ଶାସନତନ୍ତ୍ର - ସର୍ବତ୍ର ତାଙ୍କର ଉଦ୍ଧାରବାର୍ତ୍ତାର ଆଶ୍ୱାସନା ଓ ସମ୍ମୋହନ । ରାମାୟଣର ଯୁଦ୍ଧବିଗ୍ରହ କୌଣସି ରାଜ୍ୟଲାଭପାଇଁ ଉଦ୍ଦିଷ୍ଟ ନୁହେଁ । ଧର୍ମ ଓ ସଂସ୍କୃତିର ସୁରକ୍ଷା ହିଁ ସେହି ଯୁଦ୍ଧର ଲକ୍ଷ୍ୟ । ତାହା ଥିଲା ଯଥାର୍ଥରେ ମୁକ୍ତି ଓ ପରିତ୍ରାଣପାଇଁ ଯୁଦ୍ଧ । ସେହି ସଂଘର୍ଷରେ ଗୋଟିଏ ପକ୍ଷରେ ରହିଛନ୍ତି ରାଜପୁତ୍ର ଶ୍ରୀରାମଲକ୍ଷ୍ମଣ, ସମସ୍ତ ଋଷିକୁଳ, ନରନାରୀ, ଅଗଣିତ ପ୍ରଜା, ସମଗ୍ର ଜମ୍ବୁଦ୍ୱୀପର ପଶୁପକ୍ଷୀ, ବୃକ୍ଷଲତା, ନଦନଦୀ, ବନପର୍ବତ - ସତେଅବା ମହାପ୍ରକୃତି ଓ ଅନ୍ତଃପ୍ରକୃତି ପରସ୍ପର ସମ୍ବେଦନଶୀଳ ହୋଇ ଯୁଗପୁରୁଷଙ୍କୁ

ଅପେକ୍ଷା କରିଛନ୍ତି, ସାହାଯ୍ୟ କରିଛନ୍ତି, ସଂପ୍ରେରିତ କରିଛନ୍ତି, ସୁରକ୍ଷାପାଇଁ ପ୍ରାର୍ଥନା କରିଛନ୍ତି । ଅନ୍ୟପକ୍ଷରେ ମହାପ୍ରତାପୀ ଲୋକଦାରଣ ରାବଣ ଓ ତାହାର ଭୟଙ୍କର ଅସୁର ସୈନ୍ୟବଳ । ରାବଣ ଦେବତାମାନଙ୍କର ସମସ୍ତ ଗୌରବକୁ ଭୂଲୁଣ୍ଠିତ କରିଛି, ପ୍ରଜାକୁଳକୁ ଉତ୍ପୀଡ଼ିତ କରିଛି, ପୃଥିବୀର ପ୍ରାକୃତିକ ଚିତ୍ରକୁ ବିପର୍ଯ୍ୟସ୍ତ କରିଦେଇଛି, କୈଳାସଗିରି ପ୍ରଷ୍ଠସନ୍ଧିକୁ ଦୋହଲାଇ ବକ୍ର କରିଦେଇଛି, ଧୃଷ୍ଟତା ଓ ବଳାତ୍କାରରେ ନାରୀସମାଜକୁ ନିର୍ଯାତିତ କରିଛି । ଆର୍ଯ୍ୟଋଷି ଓ ସଂସ୍କାରବାଦୀ ଚିନ୍ତକମାନଙ୍କୁ ନିହତ କରିଛି ଅଥବା ହତମାନ୍ୟ କରିଛି । ଦର୍ପ ଓ ପରାକ୍ରମରେ ସମସ୍ତ ପୃଥିବୀକୁ କମ୍ପିତ କରିଛି । ନିଜର ସ୍ଥବିରବାଦୀ ଚିନ୍ତା ଓ କୃତିତ୍ୱକୁ ସଭ୍ୟତା ଓ ସଂସ୍କୃତିର ଅନ୍ତିମ କ୍ରାନ୍ତିରୂପେ ପ୍ରତିପାଦନ କରିଛି; ନିଜର ଯଶଃ ଓ ପରାକ୍ରମକୁ ଅନ୍ତିମ ମନ୍ତ୍ର ଓ ସ୍ତବରୂପେ ପ୍ରଚାର କରାଇଛି । ସେ ହିଁ ସ୍ୱୟଂ ସର୍ବଶ୍ରେଷ୍ଠ ଈଶ୍ୱର ଓ ମହାପୁରୁଷ ଏବଂ ତାହାପରେ ଅନ୍ୟ କିଛି ନାହିଁ - ଏହି ପ୍ରଚାରଧାରାକୁ ବ୍ରହ୍ମବାଦର ବିଡ଼ମ୍ବିତ ଅନୁକରଣରେ ନିଜର ଅନୁଗତ ଦୈତ୍ୟ-ରାକ୍ଷସମାନଙ୍କଦ୍ୱାରା ପ୍ରଚାର କରାଇ ଚାଲିଛି । ତାହାର କାର୍ଯ୍ୟାବଳୀ କୌଣସି ବିଚାର ବା ସମାଲୋଚନାର ଊର୍ଦ୍ଧ୍ୱରେ - ଏହି ପ୍ରତ୍ୟୟ ସ୍ୱପକ୍ଷୀୟ ଲୋକମାନଙ୍କ ମଧ୍ୟରେ ଜନ୍ମାଇଛି । ନିଜର ସାଂପ୍ରଦାୟିକ ଚିନ୍ତା ଓ ଚଳଣିକୁ ବଳପୂର୍ବକ ଅନ୍ୟମାନଙ୍କ ଉପରେ ଲଦିଦେଇଛି । ଯେ କୌଣସି ନୂତନ ଚିନ୍ତା ଅଥବା ସଂସ୍କାରର ପଥକୁ ଅବରୁଦ୍ଧ କରିଦେଇଛି । ତାହାର ମତ ଓ କାର୍ଯ୍ୟଧାରାକୁ ଯେଉଁମାନେ ବିରୋଧ କରିବେ, ସେମାନେ ମୃତ୍ୟୁଦଣ୍ଡ ପାଇବେ । ନିଜର ଅହଂପୁଷ୍ଟ ସ୍ୱୈରାଚାର ପଦ୍ଧତିକୁ ନିରଙ୍କୁଶ କରିବାପାଇଁ ସନ୍ତ୍ରାସବାଦୀବାହିନୀ ସୃଷ୍ଟି କରିଛି । ନିଜକୁ ଏକାଧାରରେ ଧର୍ମ ଓ ଶାସନତନ୍ତ୍ରର ସର୍ବଶ୍ରେଷ୍ଠ ପ୍ରବକ୍ତା, ବିଚାରକ, ମୀମାଂସକ ଓ କର୍ତ୍ତାରୂପେ ଅଧିଷ୍ଠିତ କରାଇଛି, ବହୁ ଯକ୍ଷ, ବିଦ୍ୟାଧର, କିନ୍ନରମାନେ ବାଧହୋଇ ରାକ୍ଷସ ସଂପ୍ରଦାୟଭୁକ୍ତ ହୋଇଯାଇଛନ୍ତି । ଯେଉଁମାନେ ନିଜର ଜନ୍ମଗତ, କୁଳଗତ ସଂସ୍କାରକୁ ମାନି ରାକ୍ଷସସଂସ୍କୃତିକୁ ଗ୍ରହଣ କରୁ ନ ଥିଲେ, ସେମାନଙ୍କୁ ହତ୍ୟାକରି କଲିଜା ଖାଇଯିବାପାଇଁ ଦୈତ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଛି । ମୁନିଋଷିସମେତ ବହୁ ଆର୍ଯ୍ୟ, ନିଷାଦ, ବନେଚର (ବାନର), ନର - ଆଜି ରାକ୍ଷସ ଓ ଦୈତ୍ୟମାନଙ୍କର ଖାଦ୍ୟ ହେଉଛନ୍ତି । ରାବଣର ନିଷ୍ଠୁର ସାଂପ୍ରଦାୟିକ ବଳାତ୍କାର ସମଗ୍ର ଜମ୍ବୁଦ୍ୱୀପକୁ ଗ୍ରାସ କରି ଯାଇଥାଏ । ଦାକ୍ଷିଣାତ୍ୟସମେତ ସମଗ୍ର ଆର୍ଯ୍ୟାବର୍ତ୍ତରେ ତାହାର ରାହୁଛାୟା ବିସ୍ତାରିତ ହୋଇଯାଇଥାଏ ।

ଏହି ଦୁର୍ଦ୍ଦଶା କେବଳ ସେହି ସମୟର ନୁହେଁ, ଥରକୁ ଥର ଜମ୍ବୁଦ୍ୱୀପକୁ ଆଚ୍ଛନ୍ନ କରିଛି, କରୁଛି । ତେଣୁ ବାଲ୍ମୀକି ନିଜର ଅନ୍ତର୍ଦୃଷ୍ଟିରେ ଏପରି କାବ୍ୟ ଲେଖିବାକୁ ଚାହିଁଲେ, ଯାହାର ଆବଶ୍ୟକତା କେବଳ ସେହି ଯୁଗରେ ନୁହେଁ: ବରଂ ସବୁସମୟପାଇଁ ରହିଥିବ । ବ୍ୟକ୍ତି, ପରିବାର, ସମାଜ, ଶାସନତନ୍ତ୍ର - ପ୍ରତ୍ୟେକ କ୍ଷେତ୍ରରେ ତଦୀୟ କାବ୍ୟର ଆଦର୍ଶଗତ ପ୍ରଭାବ ମଣିଷକୁ ସଦାଚାରର ଦିଗ୍‌ଦର୍ଶନ ଦେଉଥିବ । ତତ୍‌ନିର୍ଦ୍ଦେଶିତ ଆଚାରବ୍ୟବହାର; ମନୁଷ୍ୟସମେତ ପଶୁପକ୍ଷୀ, ବୃକ୍ଷଲତା, ସମଗ୍ରପ୍ରକୃତି - ସର୍ବତ୍ର କରୁଣାର ଉଦ୍ରେକ କରାଉଥିବ । ତାଦୃଶ କାବ୍ୟର କିଏ ସେହି କାଳଜୟୀ ସଚେତସ ଅପୂର୍ବ ନାୟକ, କିଏ ସେହି ସଦାଚାରିଣୀ ନାୟିକା ? ସେମାନେ ଏକାଧାରରେ ଶରୀର, ମନଃ ଓ ଆତ୍ମିକ ସ୍ଥିତିରେ ସୁନ୍ଦର, ନିର୍ମଳ ଏବଂ ସତ୍ତ୍ୱସଂପନ୍ନ ହୋଇଥିବେ ? ବାଲ୍ମୀକିଙ୍କର ଏହି ପ୍ରଶ୍ନର ସଦୁତ୍ତର ତ୍ରିଲୋକଜ୍ଞ ନାରଦ ଦେଇଛନ୍ତି -

''ତୁମେ ଯେଉଁ ଗୁଣଗୁଡ଼ିକ ଉଲ୍ଲେଖ କଲ, ତାହା ତିନିଲୋକରେ ସୁଦୁର୍ଲଭ । ମୁଁ ବିଚାରପୂର୍ବକ ଏପରି ଜଣେ ବ୍ୟକ୍ତିଙ୍କ କଥା କହୁଛି - ଯିଏ ସେହି ଗୁଣଗୁଡ଼ିକରେ ସୁମଣ୍ଡିତ । ଜନ୍ମ ତାଙ୍କର ଇକ୍ଷ୍ୱାକୁ ବଂଶରେ, 'ରାମ' ନାମରେ ସେ ସୁବିଦିତ । ରାମଚନ୍ଦ୍ର ଏକାଧାରରେ ନୀତିବାନ୍, ମହାବଳଶାଳୀ, ସୁକାନ୍ତ, ଧୀର, ଜିତେନ୍ଦ୍ରିୟ, ବୁଦ୍ଧିମାନ୍, ସୁବିନୀତ, ବାଗ୍ମୀ, ଶ୍ରୀମାନ୍, ଶତ୍ରୁସୂଦନ, ବିପୁଳସ୍କନ୍ଧଶୋଭୀ, ମହାବାହୁ, କମ୍ବୁଗ୍ରୀବ, ବୃହଦ୍‌ହନୁସଂସ୍ଥ, ପ୍ରଶସ୍ତଉରୁ, ପ୍ରାଣପ୍ରାଚୁର୍ଯ୍ୟମୟ, କଣ୍ଠଦେଶର ଅସ୍ଥିଦ୍ୱୟ ସୁଗୁପ୍ତ, ଅରିନ୍ଦମ, ଆଜାନୁବାହୁ, ଶୋଭନମସ୍ତକ, ସୁଲଲାଟ, ସୁବିକ୍ରମ, ଚତୁରସ୍ରସୁନ୍ଦର, ସ୍ନିଗ୍ଧବର୍ଣ୍ଣ, ପ୍ରତାପୀ, ଉନ୍ନତବକ୍ଷା, ବିଶାଳାକ୍ଷ, ସୁନ୍ଦରଲକ୍ଷଣଯୁକ୍ତ, ଧର୍ମଜ୍ଞ, ସତ୍ୟସନ୍ଧ, ପ୍ରଜାବତ୍ସଳ, ଯଶସ୍ୱୀ, ଜ୍ଞାନସମ୍ପନ୍ନ, ପବିତ୍ର, ସୁଲଭାନୁଯୋଗ, ସମାହିତଚିତ୍ତ, ପ୍ରଜାପତିଙ୍କସଦୃଶ ସୃଜନଶୀଳ, ରିପୁହନ୍ତା, ସମସ୍ତ ଜୀବଜଗତ୍‌ର ରକ୍ଷକ, ଧର୍ମର ସୁରକ୍ଷକ, ରାଜଧର୍ମ ଓ କୁଳଧର୍ମର ରକ୍ଷକ, ପ୍ରଜାମାନଙ୍କର ତ୍ରାଣକର୍ତ୍ତା, ଶରଣ୍ୟ, ବେଦବେଦାଙ୍ଗତତ୍ତ୍ୱନିଷ୍ଠ, ଧନୁର୍ବେଦବିତ୍, ଶାସ୍ତ୍ରଦର୍ଶନ, ସ୍ମୃତିସଂପନ୍ନ, ପ୍ରତିଭାଯୁକ୍ତ, ସର୍ବଲୋକାଭିରାମ, ସାଧୁ ଅକ୍ଲିଷ୍ଟକର୍ମା, ବିଚକ୍ଷଣ, ସଜ୍ଜନସଂଗତ, ବିନୟୀ, ସମଦୃଷ୍ଟିସଂପନ୍ନ, ପ୍ରିୟଦର୍ଶନ, ସମୁଦ୍ରତୁଲ୍ୟ ଗମ୍ଭୀର, ହିମାଦ୍ରିସଦୃଶ ଉତ୍ତୁଙ୍ଗ ଓ ଧୈର୍ଯ୍ୟବାନ୍, ବିଷ୍ଣୁତୁଲ୍ୟ ବିକ୍ରମୀ, ଚନ୍ଦ୍ରମା ପରି ଲାବଣ୍ୟମୟ, ଶତ୍ରୁମାନଙ୍କଠାରେ କାଳାଗ୍ନିସଦୃଶ, ଧରିତ୍ରୀତୁଲ୍ୟ କ୍ଷମାଶୀଳ, କୁବେରସମ ତ୍ୟାଗୀ, ସତ୍ୟନିଷ୍ଠାରେ ସ୍ୱୟଂ ଧର୍ମସଦୃଶ'' - ଏହି ସମସ୍ତ ଲୋକୋତ୍ତର ଗୁଣରେ ବିଭୂଷିତ ।

ଅଖିଳଗୁଣସଂପନ୍ନ ଶ୍ରୀରାମଙ୍କର ଚରିତ ହେଉଛି ରାମାୟଣ । ଅୟନଶବ୍ଦର ଅର୍ଥହେଉଛି ଗତି ବା ମାର୍ଗ । ସେହି ରାମଚନ୍ଦ୍ରହିଁ ଯୁଗଯୁଗଧରି ମଣିଷର ଗତି, ମୁକ୍ତି, ଆଦର୍ଶ ଏବଂ ମାନକ । ତାଙ୍କର କାର୍ଯ୍ୟପ୍ରବାହ ମଧ୍ୟରେ ତପୋବନ, ତପସ୍ୱୀ ଓ ତପସ୍ୱିନୀ,- ସ୍ୱତନ୍ତ୍ର ମାନ୍ୟତା ଲାଭକରିଛନ୍ତି । ସେ ସ୍ୱୟଂ ତପସ୍ୟାର ମୂର୍ତ୍ତିମନ୍ତ ବିଗ୍ରହ ଏବଂ ତପୋବନରୁ ଉତ୍ତରିତ ହୋଇଥିବା ଆର୍ଯ୍ୟସଂସ୍କୃତି ଏବଂ ସନାତନଧର୍ମର ରକ୍ଷାକବଚ । ‘‘ରାଜରକ୍ଷିତବ୍ୟାନି ତପୋବନାନି’’ - ଏହି ଆଦର୍ଶ ତାଙ୍କଠାରେ ରୂପାୟିତ ।

ସେହି ଶ୍ରୀରାମଙ୍କର ଅନ୍ତରାତ୍ମା ଗାୟତ୍ରୀକଳ୍ପା ଅହଲ୍ୟାଙ୍କର ସ୍ନେହାଶିଷରେ ସିକ୍ତ ହୋଇଛି, ସେ ଆତ୍ମିକପ୍ରେରଣା ଲାଭ କରିଛନ୍ତି । ଶ୍ରୀରାମଙ୍କୁ ଅନ୍ତର୍ମନରେ ନିର୍ମାଣ କରୁଥିବା ଦ୍ୱିତୀୟପ୍ରଜାପତିସଦୃଶ ବିଶ୍ୱାମିତ୍ରଙ୍କର ଏହା ସୁନ୍ୟସ୍ତ ସଂଯୋଜନା । ମାନବିକ ନ୍ୟାୟବୋଧପାଇଁ କରୁଣାର ସ୍ପନ୍ଦନବିନ୍ଦୁରେଖା, ଯାହା ପ୍ରତ୍ୟେକ ଦିଗରେ ସଂପ୍ରସାରିତ ହୋଇ ମଣିଷସମାଜକୁ କ୍ରାନ୍ତିପଥ ଦର୍ଶାଉଥିବ, ସୁଚିନ୍ତା ବନ୍ଧ୍ୟା ନ ହୋଇ କ୍ରିୟାଶୀଳତା ମଧ୍ୟରେ ରତ୍ନଗର୍ଭା ହେଉଥିବ, ଜ୍ଞାନ ଓ କର୍ମର ଆଧାର ସ୍ୱର୍ଣ୍ଣପ୍ରସୂ ହେଉଥିବ, ଇଚ୍ଛାଶକ୍ତି କ୍ରିୟାଶକ୍ତିରେ ରୂପାନ୍ତରିତ ହେଉଥିବ: ସେଥିପାଇଁ ମିଥିଳାକୁ ଯିବାପୂର୍ବରୁ ମହାତପସ୍ୱିନୀ ଅହଲ୍ୟାଙ୍କର କରୁଣାବାରିରେ ଶ୍ରୀରାମ ଅଭିଷ୍ନାତ ହେବା ଆବଶ୍ୟକ । ଅହଲ୍ୟାଙ୍କ ଠାରେ ଆଜି ପ୍ରବଳ ଇଚ୍ଛାଶକ୍ତି ସଂଗୋପିତ । ତପସ୍ୟାର ରୂପାନ୍ତରରେ ସେ ସ୍ୱୟଂ ତତ୍ତ୍ୱ, ତତ୍ତ୍ୱଜ୍ଞା, ତତ୍ତ୍ୱଦର୍ଶିନୀ ଏବଂ ସେହି ତତ୍ତ୍ୱକୁ ପ୍ରତୀକାତ୍ମ କର୍ମଧାରାରେ ମୂର୍ତ୍ତିମନ୍ତ କରୁଥିବା କୁଶଳିନୀ ସିଦ୍ଧିଦେବୀ ।

## ମାନବୀୟ ମୂଲ୍ୟବୋଧ

ଘଟଣାପ୍ରବାହ ମଧ୍ୟରେ ଅହଲ୍ୟା ଅଭିଶପ୍ତା, କିନ୍ତୁ କାହିଁକି ? ବାଲ୍ମୀକି ବର୍ଣ୍ଣନା କରିଛନ୍ତି - ‘‘ମହର୍ଷି ଗୌତମଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କର ସେବା ଓ ଶୁଶ୍ରୂଷା କରିବାପାଇଁ ସ୍ୱୟଂ ବ୍ରହ୍ମା; - କୁମାରୀ ଅପ୍ସରା-କନ୍ୟାଟିଏ ପ୍ରଦାନ କରିଥିଲେ । ନାମ ଅହଲ୍ୟା । ସମସ୍ତ ଅପ୍ସରାକନ୍ୟାଙ୍କୁ ଇନ୍ଦ୍ର ଲାଭ କରିଥିଲେ, କେବଳ ଅହଲ୍ୟାହିଁ ବ୍ୟତିକ୍ରମ । ମର୍ତ୍ତ୍ୟଲୋକର ଜଣେ ତପସ୍ୱୀ ହସ୍ତରେ ଏହି ସୁନ୍ଦରୀକନ୍ୟାଙ୍କୁ ପ୍ରଦାନ କରିବାରେ ଦେବରାଜ ରୁଷ୍ଟ ଓ ସାସୂୟ ହୋଇଥିବେ । କିନ୍ତୁ ଭୟରେ ସେ ପ୍ରକାଶ୍ୟବିରୋଧ କରିପାରି ନାହାନ୍ତି । ଗୌତମ ତପସ୍ୱୀ, ଧର୍ମ ଓ ମୋକ୍ଷର ଉପାସକ ।

କାଳକ୍ରମେ ଅହଲ୍ୟା ଯୁବତୀ ହୋଇଛନ୍ତି । ଦେବାଙ୍ଗନା ହୋଇଥିବାରୁ ମନରେ ଉତ୍ସବପ୍ରିୟତା ଭରିରହିଛି । 'ଦେବାଃ ଉତ୍ସବ ପ୍ରିୟାଃ' । ଅନ୍ୟପକ୍ଷରେ ଗୌତମ ଗାର୍ହସ୍ଥ୍ୟଜୀବନ ପ୍ରତି ନିସ୍ପୃହ । 'ଧର୍ମାର୍ଥକାମାଃ ସମମେବ ସେବ୍ୟାଃ' - ତାଙ୍କ ପକ୍ଷରେ ଏହି ଆପ୍ତବଚନ ନିରର୍ଥକ ହୋଇଯାଇଛି । ଇନ୍ଦ୍ର ଅହଲ୍ୟାଙ୍କର ଚିତ୍ତବୃତ୍ତିକୁ ବୁଝିପାରିଛନ୍ତି । ଉତ୍ସବପ୍ରିୟ ଜୀବନତତ୍ତ୍ୱ ଉପରେ ଆଶ୍ରମଧର୍ମର ପ୍ରଲେପ ହୁଏତ କାମିନୀ ଅହଲ୍ୟାଙ୍କ ମନରେ ଅନ୍ତର୍ବେଦନା ଆଣୁଥିବ । ଅପ୍ସରାମାନେ ଦେବଲୋକରେ ସ୍ୱଚ୍ଛନ୍ଦ ଜୀବନ ଯାପନ କରନ୍ତି । ସମସ୍ତେ ଇନ୍ଦ୍ରଙ୍କପ୍ରତି ଅନୁରକ୍ତ ଓ ଆଜ୍ଞାନୁବର୍ତ୍ତିନୀ । କୌଣସି ଅନିନ୍ଦ୍ୟସୁନ୍ଦରୀ ଦେବାଙ୍ଗନା ଅପ୍ସରା ଋଷି-ଆଶ୍ରମରେ ତପସ୍ୱିନୀର ଜୀବନ କଟାଇବେ; ଏହା ଇନ୍ଦ୍ରଙ୍କର ଅନଭିପ୍ରେତ । ଅହଲ୍ୟାଙ୍କ ଅନ୍ତର୍ମନରେ ଥିବା ଅପ୍ସରାସୁଲଭ ବିଳାସିତା ଓ କାମାୟନ ଚିତ୍ତବୃତ୍ତିକୁ ଇନ୍ଦ୍ର ବୁଝିପାରିଛନ୍ତି । ହୁଏତ ଇନ୍ଦ୍ରଙ୍କୁ ପ୍ରତୀପମାର୍ଗରେ ତାହା ଉତ୍ସାହିତ କରିଥିବ । ମର୍ତ୍ତ୍ୟବାସୀ ଗୌତମଙ୍କ ତପସ୍ୟାମାର୍ଗକୁ ଇନ୍ଦ୍ର ସହ୍ୟ କରିପାରି ନାହାନ୍ତି ଏବଂ ଜଣେ ଦେବାଙ୍ଗନା ଅପ୍ସରା ସେହି ମାର୍ଗରେ ଉତ୍ତରସାଧିକା ହୋଇ ଗୌତମଙ୍କର ସହଧର୍ମିଣୀ ହେବେ, ତାହା ମଧ ଇନ୍ଦ୍ରଙ୍କୁ ଅସହିଷ୍ଣୁ କରିଥିବ । ଅପ୍ସରାମାନଙ୍କ ଉପରେ ଦେବରାଜଙ୍କର ଯେଉଁ ସ୍ୱଭାବ-ଅଧିକାର ରହିଛି, ଅହଲ୍ୟାଙ୍କ କ୍ଷେତ୍ରରେ ତାହା କ୍ଷୁଣ୍ଣ ହେଉଥିବାରୁ ଦେବରାଜ ଗୌତମଙ୍କ ପ୍ରତି ଅସହିଷ୍ଣୁ ହୋଇଥିବେ । ଏହି କ୍ଷେତ୍ରରେ ସତେଅବା ଗୌତମ ତାଙ୍କର ପ୍ରତିସ୍ପର୍ଦ୍ଧୀ । ଅନ୍ୟପକ୍ଷରେ ଇନ୍ଦ୍ରଙ୍କ ପ୍ରତି ଅପ୍ସରାକନ୍ୟା ଅହଲ୍ୟାଙ୍କର ସ୍ୱତନ୍ତ୍ର ସମ୍ଭ୍ରମ ରହିବା ସ୍ୱାଭାବିକ । ଅହଲ୍ୟାଙ୍କ ପ୍ରତି ଇନ୍ଦ୍ରଙ୍କର ପ୍ରଣୟାନୁଚିନ୍ତା ବହୁପୂର୍ବରୁ ରହିଥିଲା । ଗୌତମଙ୍କ ଅନୁପସ୍ଥିତିରେ ସେ ଛଦ୍ମବେଶ ଧାରଣକରି ଆଶ୍ରମରେ ଉପସ୍ଥିତ ହୋଇଛନ୍ତି । ଅହଲ୍ୟାଙ୍କ କାମିନୀସୁଲଭ ତନିମା ତାଙ୍କୁ ଆକୃଷ୍ଟ କରିଛି । ଛଦ୍ମବେଶୀ ଇନ୍ଦ୍ରଙ୍କୁ ଅହଲ୍ୟା ପ୍ରଥମେ ଗୌତମରୂପେ ଭାବିନେଇଛନ୍ତି, ତଦ୍ଦ୍ୱାରା ତାଙ୍କ ହୃଦୟରେ ବିଳାସମୂର୍ଚ୍ଛନାର ଦୁର୍ବଳତା ଆସିଛି । ଇନ୍ଦ୍ର ସବିନୟ ରତିଯାଞ୍ଚା କଲେ । ସ୍ୱଭାବଲଜ୍ଜାରେ ଅହଲ୍ୟା ସଂକୁଚିତ ହୋଇଯାଇଥିବେ । ହୁଏତ ଋତୁକାଳକୁ ଅପେକ୍ଷା କରିବାପାଇଁ କହିଥିବେ । ଇନ୍ଦ୍ରଙ୍କର ବଚନ ବିମର୍ଶନୀୟ ''ହେ ସୁନ୍ଦରି, କାମସନ୍ତାପିତ ବ୍ୟକ୍ତି ଋତୁକାଳକୁ ପ୍ରତୀକ୍ଷା କରେ ନାହିଁ, ଏହି ସନ୍ତାପରୁ ରକ୍ଷା କରିବାପାଇଁ ତୁମେ ହିଁ ମୋର ଶରଣ, ତୁମର ଅନୁଚିନ୍ତାରେ ମୁଁ କାତର ।'' ଦେବରାଜଙ୍କର କାକୁତିବଚନ ଅହଲ୍ୟାଙ୍କୁ ନୀରବ କରିଦେଇଥିବ । ତାହା ତାଙ୍କର ସହମତି ହୋଇପାରେ । ସଂଯମର କଞ୍ଚୁକ ମଧରେ ତାଙ୍କର ସଂଗୋପିତ କାମିନୀହୃଦୟ

ଉତ୍ତାଳ ହୋଇଯାଇଥିବ । ଅପ୍ସରାକନ୍ୟାର ସ୍ୱଭାବ-ରତୋତ୍ସବସ୍ରୋତ କୂଳଲଙ୍ଘନ କରିଥିବ ! ସେ ସନ୍ତର୍ପିତା ହୋଇଥିବେ । ବାଲ୍ମୀକି ସ୍ପଷ୍ଟଭାଷାରେ ଲେଖିଛନ୍ତି -

''ଅଥାବ୍ରବୀତ୍ ସୁରଶ୍ରେଷ୍ଠ ! କୃତାର୍ଥେନାନ୍ତରାତ୍ମନା
କୃତାର୍ଥାଽସ୍ମି ସୁରଶ୍ରେଷ୍ଠ ଗଚ୍ଛ ଶୀଘ୍ରମିତଃ ପ୍ରଭୋ ।।
ଆତ୍ମାନଂ ମାଂ ଚ ଦେବେଶ ସର୍ବଥା ରକ୍ଷ ଗୌତମାତ୍
ଇନ୍ଦ୍ରସ୍ତୁ ପ୍ରହସନ୍ ବାକ୍ୟମହଲ୍ୟାମିଦମବ୍ରବୀତ୍ ।।
ସୁଶ୍ରୋଣି ପରିତୁଷ୍ଟୋଽସ୍ମି ଗମିଷ୍ୟାମି ଯଥାଗତମ୍ ।'' [ ରାମାୟଣମ୍ ]

ଅହଲ୍ୟା ମୁନିବେଶଧାରୀ ଇନ୍ଦ୍ରଙ୍କୁ ଚିହ୍ନିପାରିଛନ୍ତି; ଦେବରାଜଙ୍କ ପ୍ରତି ଅପ୍ସରାକୁଳର ସ୍ୱତନ୍ତ୍ର ସମ୍ଭ୍ରମ ଏବଂ ନୈସର୍ଗିକ ଉତ୍ସବମୟସତ୍ତାରେ ସେ ବିସ୍ମୃତ ହୋଇଯାଇଛନ୍ତି । ଋଷିପତ୍ନୀ ହେଲେ ମଧ୍ୟ ଅପ୍ସରାଭାବର ଉତ୍ସୁକତାହେତୁ ସେ ଆଶ୍ରମଧର୍ମର ମର୍ଯ୍ୟାଦାକୁ ଭୁଲିଯାଇଛନ୍ତି । ଅନ୍ତର୍ମନର ସ୍ୱଭାବ, ବହିର୍ମନର ପ୍ରଲେପକୁ ଛିନ୍ନ କରିଦେଇଛି । ସନ୍ତର୍ପଣଚିତ୍ତରେ ଅହଲ୍ୟା କହିଛନ୍ତି - ''ଦେବରାଜ, ମୁଁ କୃତାର୍ଥ ହେଲି । ଆପଣ ଶୀଘ୍ର ଏଠାରୁ ଚାଲିଯା'ନ୍ତୁ । ହେ ଦେବେଶ, ମୋତେ ଓ ନିଜକୁ ଗୌତମଙ୍କଠାରୁ ସର୍ବଥା ରକ୍ଷା କରନ୍ତୁ ।'' ଅହଲ୍ୟାଙ୍କର ଏହି କାତରବାଣୀରେ ଇନ୍ଦ୍ର ଜୋରରେ ହସି କହିଲେ, ''ସୁନ୍ଦରୀ ମୁଁ ପରିତୁଷ୍ଟ । ଆସିଥିବା ମାର୍ଗରେ ମୁଁ ଚାଲିଯିବି ।''

କାମାନୁଚିନ୍ତାରେ ଅହଲ୍ୟା ଆତ୍ମସମର୍ପଣ କରିଛନ୍ତି । ''କୃତାର୍ଥ ହେଲି'' - ଏହି ବଚନରେ ନିଜର ସୁଖବୋଧ ମଧ୍ୟ ପ୍ରକାଶ କରିଛନ୍ତି । କିନ୍ତୁ ଇନ୍ଦ୍ରଙ୍କର ଉଚ୍ଚହାସ୍ୟରେ [ଇନ୍ଦ୍ରସ୍ତୁ ପ୍ରହସନ୍ ବାକ୍ୟମ୍...] ସେ ତତ୍କ୍ଷଣାତ୍ ପ୍ରବଞ୍ଚିତ ହୋଇଗଲେ । ଇନ୍ଦ୍ର ଆଶ୍ରମକୁଟୀରକୁ ମୁଖ୍ୟ ମାର୍ଗଦେଇ ଆସି ନ ଥିଲେ । ଲୁକ୍କାୟିତ ଭାବରେ ଆସିଥିଲେ । ଋଷିଙ୍କର ବେଶ ଧରି ଆସିଥିଲେ । ଅହଲ୍ୟାଙ୍କ ପ୍ରତି ତାଙ୍କର ବହୁପୂର୍ବରୁ ଆସକ୍ତି ଥିଲା । ଗୌତମଙ୍କ ପ୍ରତି ପ୍ରବଳ ଅସୂୟା ଥିଲା । ଅହଲ୍ୟା ଆଶ୍ରମଧର୍ମରେ ନିଷ୍ଣାତ ଥିବାରୁ ସେ ଖୁସି ନ ଥିଲେ । କୌଣସି ଅପ୍ସରା ଦେବରାଜଙ୍କ ପ୍ରତି ଉଦାସୀନ ନୁହନ୍ତି । ପାତିବ୍ରତ୍ୟ ଋଷିସମାଜର ସଂସ୍କାର । ଆଜି ଇନ୍ଦ୍ର ଅହଲ୍ୟାଙ୍କର ସେହି ପାତିବ୍ରତ୍ୟ ଭଙ୍ଗ କରିବା ସହିତ ଗୌତମଙ୍କ ଉପରେ ମଧ୍ୟ ପ୍ରତିଶୋଧ ନେଇଛନ୍ତି । ତାହାହିଁ ହୁଏତ ତାଙ୍କ **ଉଚ୍ଚହାସ୍ୟର** କାରଣ ହୋଇପାରେ ଏବଂ ତଦ୍ୱାରା ଦେବରାଜଙ୍କର ନିର୍ଲଜ୍ଜ ଅକୃତଜ୍ଞତା ପ୍ରକାଶ ପାଇଛି । ଯେକୌଣସି ତପସ୍ୱୀଙ୍କ ପ୍ରତି ଦେବରାଜ ଅସହିଷ୍ଣୁ । ତାଙ୍କର

ଇନ୍ଦ୍ରପଦର ନିରାପତ୍ତା, ମୁନିଋଷିଙ୍କର ତପସ୍ୟାହେତୁ ହୁଏତ କ୍ଷୁଣ୍ଣ ହୋଇପାରେ, ସେଥିପାଇଁ ସେ ବିଚଳିତ ହୋଇଉଠନ୍ତି । ମୁନିଋଷିମାନଙ୍କ ନିଶ୍ଚଳତା ଭାଙ୍ଗିବାପାଇଁ ଦେବାଙ୍ଗନା ଅପ୍ସରାମାନଙ୍କୁ ମଧ୍ୟ ପଠାଇଥାଆନ୍ତି । ଅନ୍ୟପକ୍ଷରେ ଅହଲ୍ୟା ଦେବାଙ୍ଗନା ହୋଇ ଗୌତମଙ୍କ ତପସ୍ୟାରେ ବ୍ରତଚାରିଣୀ, ଉତ୍ତରସାଧିକା ହେବ; ଏହା ଇନ୍ଦ୍ରଙ୍କ ମନରେ ପ୍ରତୀପଭାବନା ଆଣିଛି । ଅହଲ୍ୟାଙ୍କ ଋଷିପତ୍ନୀର ଗୌରବକୁ ଆହତ କରି ସେ ଆଶ୍ରମଧର୍ମପ୍ରତି ତାଚ୍ଛଲ୍ୟ ପ୍ରକାଶ କରିଛନ୍ତି । ତେଣୁ ଉଚ୍ଚହାସ୍ୟରେ କହିଛନ୍ତି, ''ସୁଶ୍ରୋଣି, ମୁଁ ପରିତୁଷ୍ଟ'' ।

ଦେବରାଜଙ୍କର ଏହି ବ୍ୟବହାରରେ ଅହଲ୍ୟାଙ୍କର ସଂବିତ୍ ଫେରିଆସିଛି । ତାଙ୍କର ହୃଦୟ ପଶ୍ଚାତ୍ତାପରେ ଦଗ୍ଧ । ଗୌତମଙ୍କ ସମ୍ମୁଖରେ ପ୍ରାଞ୍ଜଳି ଥରୁଥାନ୍ତି । କଠିନ ତପସ୍ୟାରେ ପୁନର୍ଜନ୍ମପାଇଁ ସମ୍ଭବତଃ ମାନସିକ ପ୍ରସ୍ତୁତି କରିନେଇଥାନ୍ତି । ଗୌତମ ଅଭିଶାପ ଦେଲେ, ନୀରବରେ ଗ୍ରହଣ କରିନେଇଛନ୍ତି । ଅଭିଶାପ ନ ଦେଇଥିଲେ ମଧ୍ୟ ସେ କଠୋର ତପସ୍ୟା ମଧ୍ୟରେ ନିଜକୁ ଉତ୍ତରିତ କରିଥାନ୍ତେ । ଠିକ୍ ମଧ୍ୟରାତ୍ରିର ନୀଳସରସ୍ୱତୀଙ୍କ ପରି । ସେଥିରୁ ଜନ୍ମ ନେବେ ଗାୟତ୍ରୀ ଉଷା । ଅତଳ ତପସ୍ୟାରେ ଅହଲ୍ୟା କ୍ରାନ୍ତିବିନ୍ଦୁକୁ ସ୍ପର୍ଶ କରିଛନ୍ତି । ଆଜି ଶତ ଇନ୍ଦ୍ର, ସ୍ୱୟଂ କନ୍ଦର୍ପ ମଧ୍ୟ ତାଙ୍କୁ ସାମାନ୍ୟ ବିଚଳିତ କରିପାରିବ ନାହିଁ । ତପସ୍ୟାର ଧାରା ତାଙ୍କର ସ୍ୱଭାବନିୟତ ହୋଇଯାଇଛି । ଅପ୍ସରାହୃଦୟର କାମାୟନମାର୍ଗ ସଂପୂର୍ଣ୍ଣରୂପେ ତପସ୍ୟା ମାଧ୍ୟମରେ ଉନ୍ନୀତ ଓ ରୂପାନ୍ତରିତ ହୋଇଯାଇଛି । ତପସ୍ୱିନୀର ସ୍ୱଭାବସଂଯମ ଓ ସ୍ନେହଭାବ ତାଙ୍କଠାରୁ ବିଚ୍ଛୁରିତ ହୋଇଯାଉଛି । ସ୍ୱଭାବନିୟତ ବ୍ରାହ୍ମୀ ସ୍ଥିତି । ଏପରି ଜଣେ ଉଦଗ୍ରତପସ୍ୱିନୀ, ସ୍ୱୟଂ ତପସ୍ୟାର ସିଦ୍ଧି, ସାମାଜିକ କଳଙ୍କରୁ ମୁକ୍ତ ହେବ ନାହିଁ ? ଏହା ଏକ ସାମାଜିକ ପ୍ରଶ୍ନ । ଏହାର ଉତ୍ତର ଦେଇଛନ୍ତି ଶ୍ରୀରାମଚନ୍ଦ୍ର ଦେବୀଙ୍କର ପଦବନ୍ଦନା କରି । ନିରଭିମାନା ଅହଲ୍ୟା ଋଷିପତ୍ନୀ ଭାବରେ ଗୌତମଙ୍କ ସହିତ ମିଳିତ ହୋଇଛନ୍ତି । ସେ ପୁରାଣୀ ଯୁବତୀ, ଶାଶ୍ୱତକନ୍ୟାର ପରାକାଷ୍ଠା । ତପସ୍ୟାର ଉର୍ଜିତ ବିଭୂତିରେ ସ୍ୱୟଂ ପୁନିତା, ଶ୍ରୀରାମଙ୍କ ଦର୍ଶନରେ ତାଙ୍କର ପୁଣ୍ୟ ଧାରା ଅଧିକ ବିଚ୍ଛୁରିତ ହୋଇଯାଇଛି ।

ଏହି ଆଖ୍ୟାନର ସାମାଜିକ ନିର୍ଦ୍ଦେଶ ରହିଛି । ରାମାୟଣରେ ପରିବାର ଓ ସମାଜ ହେଉଛି ଭିତ୍ତିଭୂମି । ଗୃହସ୍ଥଧର୍ମର ବାର୍ତ୍ତା ଏଥିରେ ସନ୍ନିହିତ । ଚତୁର୍ବର୍ଗର ସଂସିଦ୍ଧି ସମନ୍ୱୟରେ ନିହିତ । ଜମ୍ବୁଦ୍ୱୀପ ଯେତେବେଳେ ରାକ୍ଷସମାନଙ୍କଦ୍ୱାରା ଆକ୍ରାନ୍ତ,

ସେତେବେଳେ ସମସ୍ତେ ମିଳିତ ହୋଇ ତାହାର ପ୍ରତିରୋଧ କରିବା ଉଚିତ । ସମାଜର ଅଗ୍ରଗଣ୍ୟ ଚିନ୍ତକମାନେ ଯଦି ମୋକ୍ଷାଶ୍ରୟୀ ହୋଇ ପାରିବାରିକ ଓ ସାମାଜିକ କର୍ତ୍ତବ୍ୟ ପ୍ରତି ଅବହେଳା ଦେଖାନ୍ତି, କିଏ ଦିଗ୍‌ଦର୍ଶନ ଦେବ ? କେବଳ ପରାବିଦ୍ୟାର ତନ୍ମୟତା କ'ଣ ତପୋବନ, ସଂସ୍କୃତି ଓ ଧର୍ମକୁ ରକ୍ଷା କରି ପାରିବ ? ମୋକ୍ଷାଶ୍ରୟୀ ବ୍ୟକ୍ତି କାମିନୀକାଞ୍ଚନଠାରୁ ଦୂରରେ ରହିବେ, ଯଦି ଗ୍ରହଣ କରନ୍ତି, ତାହାର ସୁରକ୍ଷାପାଇଁ ସଚେତନ ରହିବେ । ଜୀବନରେ ଧର୍ମାର୍ଥକାମମୋକ୍ଷର ସମତା ଆଚରଣ କରିବେ । **ସମତ୍ୱଂ ଯୋଗ ଉଚ୍ୟତେ** । ପତିପରାୟଣା ଯୁବତୀନାରୀକୁ ଉପେକ୍ଷା କରି ନିର୍ଜନତାରେ ତପୋମଗ୍ନ ରହିବା ଗୌତମଙ୍କ ପକ୍ଷରେ କର୍ତ୍ତବ୍ୟବିଚ୍ୟୁତି । ପ୍ରତିକୂଳ ପରିସ୍ଥିତି ଓ ପ୍ରବଞ୍ଚନା ମଧ୍ୟରେ ବିପର୍ଯ୍ୟସ୍ତ ହେଉଥିବା ନାରୀକୁ ଉଦ୍ଧାର କରିବା, ସମ୍ମାନ ଦେବା ଏକ ସାମାଜିକ ଦାୟିତ୍ୱ । ସମାଜରେ ଘଟିଯାଉଥିବା କଳଙ୍କପସରାକୁ କେବଳ ନାରୀମୁଣ୍ଡରେ ଲଦିଦେବା ଯଥାର୍ଥ ନ୍ୟାୟ ବା ଧର୍ମ ନୁହେଁ । ଅନୁଶୋଚନାର ଅଗ୍ନିଦାହ ଓ ତପସ୍ୟାର ନିକଷରେ ଅହଲ୍ୟା ଚିରପାବନୀ ହୋଇ ଯାଇଛନ୍ତି । ମହର୍ଷି ବିଶ୍ୱାମିତ୍ରଙ୍କ ସମେତ ରାମଚନ୍ଦ୍ରଙ୍କର ସମ୍ମାନପ୍ରଦର୍ଶନ ଯଥାର୍ଥରେ ମାନବୀୟ ମୂଲ୍ୟବୋଧର ନିଦର୍ଶନ ।

**ଉପସଂହାର : ଶାଶ୍ୱତୀ କନ୍ୟା**

ଅହଲ୍ୟା, ପଞ୍ଚକନ୍ୟା ମଧ୍ୟରୁ ଅନ୍ୟତମା । ସେମାନଙ୍କ ନାମ ସ୍ମରଣ କଲେ ମହାପାତକରୁ ମୁକ୍ତି ମିଳିଥାଏ । ପଞ୍ଚକନ୍ୟା ମଧ୍ୟରେ ଅହଲ୍ୟା, ତାରା, ମନ୍ଦୋଦରୀ, କୁନ୍ତୀ ଓ ଦ୍ରୌପଦୀ ଅନ୍ତର୍ଭୁକ୍ତ । ପ୍ରଥମ ତିନିଜଣଙ୍କ ବର୍ଣ୍ଣନା ରାମାୟଣରୁ ମିଳିଥାଏ । ଶେଷୋକ୍ତ କୁନ୍ତୀ ଓ ଦ୍ରୌପଦୀ ହେଉଛନ୍ତି ମହାଭାରତର ପ୍ରଖ୍ୟାତ ନାରୀଚରିତ୍ର । ବିବରଣୀରୁ ଜଣାଯାଏ, ଏହି ପାଞ୍ଚଜଣ ନାରୀଚରିତ୍ର ଅବସ୍ଥାଚକ୍ରରେ ଏକାଧିକ ପୁରୁଷଙ୍କ ସହିତ ମିଳିତ ହୋଇଛନ୍ତି । ସେଥିମଧ୍ୟରୁ ତାରା ଓ ମନ୍ଦୋଦରୀ ଯଥାକ୍ରମେ ବାଳୀ ଓ ରାବଣର ନିଧନ ପରେ ସୁଗ୍ରୀବ ଏବଂ ବିଭୀଷଣଙ୍କର ମହିଷୀରୂପେ ବର୍ଣ୍ଣିତ । କୁନ୍ତୀ, ମହାରାଜ ପାଣ୍ଡୁଙ୍କୁ ବିବାହ କରିଥିଲେ ମଧ୍ୟ ନିୟୋଗପ୍ରଥା ଅନୁସାରେ ଧର୍ମ, ପବନ ଓ ଇନ୍ଦ୍ରଙ୍କ ସହିତ ମିଳିତ ହୋଇ ଯଥାକ୍ରମେ ଯୁଧିଷ୍ଠିର, ଭୀମ ଓ ଅର୍ଜୁନଙ୍କର ଜନନୀ ହୋଇଥିଲେ । ବିବାହପୂର୍ବରୁ ସୂର୍ଯ୍ୟଙ୍କ ସମ୍ବନ୍ଧିତ ଯେଉଁ କାନୀନପୁତ୍ରଙ୍କୁ ଜନ୍ମ ଦେଇଥିଲେ ସେ ହେଉଛନ୍ତି ମହାଭାରତର ମହାନ୍ ଯୋଦ୍ଧା କର୍ଣ୍ଣ । ସୂର୍ଯ୍ୟଙ୍କର ପତ୍ନୀ

ଅର୍ଥରେ ଦୁଇଟି ସ୍ତ୍ରୀଲିଙ୍ଗାନ୍ତ ଶବ୍ଦ ବ୍ୟାକରଣସିଦ୍ଧ - ସୂର୍ଯ୍ୟା ଏବଂ ସୂରୀ । ନିର୍ବଚନ ଅନୁସାରେ 'ସୂରୀ' ଏହି ପଦଟି ସୂର୍ଯ୍ୟଙ୍କ ମାନବୀ ସ୍ତ୍ରୀ ଅର୍ଥାତ୍ କୁନ୍ତୀଙ୍କୁ ବୁଝାଇଥାଏ । ଦ୍ରୁପଦରାଜନନ୍ଦିନୀ କୃଷ୍ଣା ମଧ ପାଞ୍ଚଜଣ ପାଣ୍ଡବଙ୍କୁ ବିବାହ କରିଥିଲେ । ଅହଲ୍ୟା ଗୌତମଙ୍କର ପତ୍ନୀ । ଇନ୍ଦ୍ର ଓ ସୂର୍ଯ୍ୟ ତାଙ୍କର ଜାରପତିରୂପେ ବର୍ଣ୍ଣିତ । ରକ୍ଷଣଶୀଳ ବିଚାର ଦୃଷ୍ଟିରୁ ଏହିସବୁ କ୍ଷେତ୍ରରେ 'କନ୍ୟା'ଶବ୍ଦର ଆଭିଧାନିକ ଅର୍ଥ ବ୍ୟାହତ ହେଉଛି । କନ୍ୟାଶବ୍ଦ 'କନ୍'ଧାତୁରୁ ନିଷ୍ପନ୍ନ । ଏହାର ଅର୍ଥ ହେଉଛି ଦୀପ୍ତିମୟୀ କୁମାରୀ । ସଂପ୍ରସାରଣରେ ଏହା ସୁକୁମାରତା, ମୃଦୁଳତା, ଲଘୁତା, କମନୀୟତା ପ୍ରଭୃତି ଗୁଣକୁ ବୁଝାଇଥାଏ । ଏହା କିଶୋରୀର ପ୍ରଥମ ଅବସ୍ଥା । ତେଣୁ 'ପ୍ରଥମବୟସୀ' ଶବ୍ଦଟି ମଧ ପ୍ରଚଳିତ । ଗୌରୀ ଶବ୍ଦ ମଧ କନ୍ୟାର ପର୍ଯ୍ୟାୟବାଚକ । 'ଅଷ୍ଟବର୍ଷା ଭବେଦ୍ ଗୌରୀ' । ଆଠବର୍ଷର ଝିଅକୁ ଗୌରୀ କହନ୍ତି । ପର୍ଯ୍ୟାୟବାଚକ ଶବ୍ଦ ହେଲା - କନ୍ୟା, କୁମାରୀ, ନଗ୍ନିକା, ଅନାଗତାର୍ତବା; [କନ୍ୟାକୁମାରୀ ଗୌରୀତୁ ନଗ୍ନିକାଽନାଗତାର୍ତବା] । ରକ୍ଷଣଶୀଳ ଅର୍ଥ ଅଦୃଷ୍ଟରଜାଃ । ନମନୀୟ ଅର୍ଥରେ ବିବାହ ହୋଇ ନାହିଁ ଅଥଚ ବିବାହଯୋଗ୍ୟା, ଅପେକ୍ଷମାଣା ଝିଅ । ପିତୃଗୃହରେ କନ୍ୟାସମୟ ପ୍ରଫୁଲ୍ଲ ହୃଦୟରେ ଅତିବାହିତ ହୋଇଥାଏ । ବିବାହ ପରେ ଝିଅ ପରଘରକୁ ଚାଲିଯିବ, ସେଥିପାଇଁ ସମସ୍ତେ ଅତ୍ୟନ୍ତ ଶ୍ରଦ୍ଧା କରୁଥାନ୍ତି । ଯଥାର୍ଥରେ କୁହାଯାଇଛି, ''କନ୍ୟାଭାବରମଣୀୟୋଽୟଂ କାଳଃ'' । ସେହିଭାବର ପ୍ରତୀକଦେବୀ ହେଉଛନ୍ତି **କନ୍ୟାକୁମାରୀ** । ଉତ୍ତରରେ [ହିମାଦ୍ରିର] କୈଳାସ, କିଶୋର **ଚନ୍ଦ୍ରଶେଖର ଶିବ** ଓ ଦକ୍ଷିଣରେ **କନ୍ୟାକୁମାରୀ**, ଅପେକ୍ଷମାଣ ହୃଦୟରେ ସତେଅବା ପରସ୍ପରକୁ ମୁଗ୍ଧାୟନ ଦୃଷ୍ଟିରେ ଚାହିଁବା ସହିତ ତପଃନିଷ୍ଣାତ ହୋଇଛନ୍ତି । ପତିସହିତ ମିଳିତ ହେଲାପରେ କନ୍ୟାଭାବ ନଷ୍ଟ ହୁଏ, ଏହାହିଁ ସାଧାରଣ ବିଶ୍ୱାସ । ସୁଲକ୍ଷଣା କନ୍ୟାର ରୂପବର୍ଣ୍ଣନାରେ କୁହାଯାଇଛି -

''ଶ୍ୟାମା ସୁକେଶୀ ତନୁରୋମରାଜୀ
ସୁଭ୍ରୂ ସୁଶୀଳା ସୁଗତିଃ ସୁଦନ୍ତା ।
ବେଦୀବିମଧ୍ୟା ଯଦି ପଙ୍କଜାକ୍ଷୀ
କୁଳେନହୀନାଽପି ବିବାହନୀୟା ।।''

ଲାବଣ୍ୟମୟୀ, ସୁନ୍ଦରକେଶଯୁକ୍ତ, ସୂକ୍ଷ୍ମରୋମାବଳୀ, ସୁନ୍ଦରଭ୍ରୂଲତା, ସୁଚରିତ୍ରା, ସୁନ୍ଦରଗତିସଂପନ୍ନା, ସୁଦତୀ, ଡମ୍ବରୁପରି କଟୀଦେଶ, ପଦ୍ମନେତ୍ରା - ତାଦୃଶୀ କନ୍ୟା

କୁଳହୀନା ହୋଇଥିଲେ ମଧ୍ୟ ବିବାହ କରିବା ଉଚିତ । କଥା ଅଛି, 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' । କନ୍ୟାର **କୌମାର୍ଯ୍ୟ** ହେଉଛି ବୈଶିଷ୍ଟ୍ୟ । ରାମାୟଣ ଓ ମହାଭାରତବର୍ଣ୍ଣିତ ଏହି ପାଞ୍ଚଟି ନାରୀଚରିତ୍ର ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଅତୁଳନୀୟ, କିନ୍ତୁ କନ୍ୟାଶବ୍ଦର ପ୍ରୟୋଗଦୃଷ୍ଟିରୁ ଯଥାର୍ଥ କି ନୁହେଁ, ତାହା ବିବଦମାନ ହେବା ସ୍ୱାଭାବିକ । ଅଧିକନ୍ତୁ ପୂର୍ବରଷିମାନେ ପ୍ରାତଃକାଳରେ ସେମାନଙ୍କ ନାମକୀର୍ତ୍ତନ କରିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି, -

''ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା
ପଞ୍ଚ କନ୍ୟାଃ ସ୍ମରେନ୍ନିତ୍ୟଂ ମହାପାତକନାଶନମ୍ ।''

ସେମାନଙ୍କ ଚରିତାବଳୀର ଅନୁଶୀଳନରୁ ଜଣାଯାଏ, କେହି କୌଣସି ଅବସ୍ଥାରେ ତଦୀୟ ପତିଙ୍କୁ ଅତିକ୍ରମଣ କରିନାହାନ୍ତି । ସେମାନଙ୍କ ଉଦାରତା, ସେବାଶୁଶ୍ରୂଷା, କର୍ତ୍ତବ୍ୟନିଷ୍ଠା ଏବଂ ପତିପ୍ରାଣତା ମଧ୍ୟ ଅନନ୍ୟ । ଅବସ୍ଥାଚକ୍ରରେ ସେମାନେ ଏକାଧିକ ପୁରୁଷ ସହିତ ସମ୍ବନ୍ଧିତ ହୋଇ ଯାଇଛନ୍ତି । ପୂର୍ବସୂରୀମାନେ ସେମାନଙ୍କର ଶାଶ୍ୱତକୌମାର୍ଯ୍ୟକୁ ସୂଚାଇବାପାଇଁ **ପଞ୍ଚକନ୍ୟା** ଶବ୍ଦଟି ପ୍ରୟୋଗ କରିଛନ୍ତି ।

କୁମାରୀତ୍ୱ ପ୍ରସଙ୍ଗରେ ମନୁଷ୍ୟ ଓ ଦେବସଂସ୍କୃତି ମଧ୍ୟରେ ପୃଥକ୍ ଧାରଣା ପ୍ରଚଳିତ । ଏହି ସ୍ଥଳରେ ଦେବସଂସ୍କୃତି ଓ ଇନ୍ଦ୍ରାଣୀ ପ୍ରସଙ୍ଗ ଉଲ୍ଲେଖଯୋଗ୍ୟ । ଦେବରାଜଙ୍କୁ ଇନ୍ଦ୍ର / ମହେନ୍ଦ୍ର କୁହାଯାଏ । ଏହା ଦେବତାବିଶେଷ ତଥା ଏକ ପଦବୀକୁ ବୁଝାଇଥାଏ । ଶକ୍ରନାମକ ଦେବତା ସ୍ୱର୍ଗରାଜ୍ୟର ମୁଖ୍ୟତଃ ଅଧିପତି, ଇନ୍ଦ୍ର । ଅମରସିଂହ ନିଜର କୋଷଗ୍ରନ୍ଥରେ ଇନ୍ଦ୍ରଙ୍କ ପର୍ଯ୍ୟାୟବାଚକ ଛତିଶଟି ନାମର ଉଲ୍ଲେଖ କରିଛନ୍ତି । ସେଥିମଧ୍ୟରୁ ଏହି 'ଶକ୍ର' ନାମ ବ୍ୟତୀତ ଅନ୍ୟଗୁଡ଼ିକ ବିଶେଷଣପର୍ଯ୍ୟାୟ ବାଚକ, କାଳକ୍ରମେ ତାହା ନାମପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହୋଇଛି । ଏହି 'ଶକ୍ର' ହେଉଛନ୍ତି ଜ୍ୟେଷ୍ଠ ଆଦିତ୍ୟ, ଦେବରାଜ । ବିବରଣରୁ ଜଣାଯାଏ, ଇନ୍ଦ୍ରପଦବୀରେ ବହୁଦେବତା ସମୟକ୍ରମେ ଅଧିଷ୍ଠିତ ହୋଇଛନ୍ତି । **'ଶଚୀ'** ହେଉଛନ୍ତି ଇନ୍ଦ୍ରଙ୍କର ପତ୍ନୀ । ପୁଲୋମଜା ଓ ଇନ୍ଦ୍ରାଣୀ ତାଙ୍କର ପର୍ଯ୍ୟାୟବାଚକ ଶବ୍ଦ । କୌଣସି କାରଣରୁ 'ଶକ୍ର' ଅନୁପସ୍ଥିତ ଥିଲେ ଅଥବା ଇନ୍ଦ୍ରପଦବୀ ଶୂନ୍ୟପଡ଼ିଲେ, ସେହି ସ୍ଥାନରେ ବରୁଣ, ଯମ, ଅଗ୍ନି ଅଥବା 'ମିତ୍ର' ନାମକ ଦେବତାମଧ୍ୟରୁ କେହି ଜଣେ ସେହି ଆସନରେ ବସନ୍ତି । ଇନ୍ଦ୍ରପଦବୀ

କେତେବେଳେ ଶୂନ୍ୟ ରହେ ନାହିଁ । ଶକ୍ରଙ୍କ ସମେତ ବରୁଣ, ଅଗ୍ନି ପ୍ରଭୃତି ଦେବତା, ଯିଏ ଇନ୍ଦ୍ରପଦବୀରେ ଆସୀନ ଥିଲେ ମଧ୍ୟ ଶଚୀ ଇନ୍ଦ୍ରାଣୀ ପଦବୀରେ ରହିଥାନ୍ତି । ଶଚୀଙ୍କର ଇନ୍ଦ୍ରାଣୀସ୍ଥିତି (ଇନ୍ଦ୍ରଙ୍କପତ୍ନୀ) ଅକ୍ଷୁଣ୍ଣ, କିନ୍ତୁ ବିଭିନ୍ନ ଦେବତା ସମୟ ଓ ଅବସ୍ଥାକ୍ରମେ ଇନ୍ଦ୍ରାସନରେ ସ୍ୱର୍ଗରାଜ୍ୟରେ ରାଜତ୍ୱ କରିଥିବାର ଉଲ୍ଲେଖ ଅଛି । 'ଶଚୀ' ଏକାଧିକ ଇନ୍ଦ୍ରଙ୍କ (ଇନ୍ଦ୍ରପଦବୀରେ ସମାସୀନ ଦେବତା) ପତ୍ନୀହୋଇ ମଧ୍ୟ ଅଖଣ୍ଡ ସତୀତ୍ୱର ଅଧିକାରିଣୀ । କଥାରେ ଅଛି, ''କେତେ ଇନ୍ଦ୍ର ଗଲେଣି: କିନ୍ତୁ ଶଚୀ ସବୁଦିନେ ଇନ୍ଦ୍ରାଣୀ'' । ଇନ୍ଦ୍ରପଦବୀ ସାଧାରଣତଃ ଶକ୍ର, ବରୁଣ, ଯମ, ଅଗ୍ନି ଓ ମିତ୍ର - ଏହି ପାଞ୍ଚଜଣ ଦେବତାବିଶେଷଙ୍କ ମଧ୍ୟରେ ପରିବର୍ତ୍ତିତ ହେବାର ଦେଖାଯାଏ । ସେହି ସମୟରେ ପତ୍ନୀଭାବରେ ଶଚୀ ଅଧିଷ୍ଠିତ ଥାଆନ୍ତି । କିନ୍ତୁ କୌଣସି ଅସୁର କିମ୍ୱା ମନୁଷ୍ୟପ୍ରଭୃତି ସ୍ୱକୀୟ ପରାକ୍ରମରେ ସ୍ୱର୍ଗରାଜ୍ୟର ଅଧିପତି ହେଲେ; ଶଚୀ (ଇନ୍ଦ୍ରାଣୀ) ତାଙ୍କର ପତ୍ନୀତ୍ୱ ସ୍ୱୀକାର କରନ୍ତି ନାହିଁ । ଉଦାହରଣସ୍ୱରୂପ, ମର୍ତ୍ତ୍ୟର ରାଜା ନହୁଷ ନିଜର ପୁଣ୍ୟ ଓ ପରାକ୍ରମ ହେତୁ ସ୍ୱର୍ଗରେ ଇନ୍ଦ୍ରତ୍ୱ ଲାଭ କରିଥିଲେ । ସେତେବେଳେ ଶଚୀ ନିଜକୁ ଦୂରେଇ ରଖି ଦେବଗୁରୁ ବୃହସ୍ପତିଙ୍କ ଗୃହରେ ଆଶ୍ରୟ ନେଇଥିଲେ । ନହୁଷ ଇନ୍ଦ୍ରାଣୀଙ୍କୁ ଲାଭ କରିବାକୁ ଇଚ୍ଛାକରି ଶେଷରେ ଋଷିମାନଙ୍କଦ୍ୱାରା ଅଭିଶପ୍ତ ହୋଇ ଅଜଗରରୂପ ଧାରଣ କରିଥିଲେ - ଏହି ଆଖ୍ୟାନ ମହାଭାରତରେ ବର୍ଣ୍ଣିତ ଅଛି । ଏଠାରେ ଲକ୍ଷ୍ୟ କରିବାର କଥା; ଦେବତା ବା ଅପ୍ସରା ସଂସ୍କୃତିରେ ନାରୀ ବହୁପତିକା ହୋଇ ମଧ୍ୟ ସତୀତ୍ୱର ଅଧିକାରିଣୀ ହୋଇଥାନ୍ତି । ଗନ୍ଧର୍ବସଂସ୍କୃତି ଦେବସଂସ୍କୃତିର ଅନୁରୂପ । କାଳକ୍ରମେ ଅପ୍ସରାସଂସ୍କୃତି ଗନ୍ଧର୍ବସଂସ୍କୃତିରେ ମିଳିଯାଇଛି । ଦେବଗନ୍ଧର୍ବସଂସ୍କୃତି ମନୁଷ୍ୟସଂସ୍କୃତିଠାରୁ ଭିନ୍ନ । ଦେବକନ୍ୟା ବା ଅପ୍ସରାମାନଙ୍କ ମଧ୍ୟରେ ଏକାଧିକ ପତି ଗ୍ରହଣ କରିବାର ନିଦର୍ଶନ ରହିଛି । ତାହା ପାଞ୍ଚସଂଖ୍ୟାରୁ ଅଧିକ ହୋଇପାରିବ ନାହିଁ, ତାହାହିଁ ମର୍ଯ୍ୟାଦା । ସମ୍ଭବତଃ ସପ୍ତସିନ୍ଧୁ ଅଞ୍ଚଳରେ ଯେଉଁ ପଞ୍ଚସଂଖ୍ୟକ ଆର୍ଯ୍ୟଜନ (ଆର୍ଯ୍ୟଗୋଷ୍ଠୀ) ପ୍ରଥମେ ବସତି ସ୍ଥାପନ କରିଥିଲେ; ସେମାନଙ୍କ ମଧ୍ୟରୁ ପ୍ରତିନିଧିସ୍ଥାନୀୟ ପାଞ୍ଚଜଣ ଶାସନମୁଖ୍ୟ ଥିଲେ । ରାଜାପଦବୀ ସେହି ପାଞ୍ଚଜଣଙ୍କ ମଧ୍ୟରେ ପରିବର୍ତ୍ତିତ ହେଉଥିଲା । ଶକ୍ର, ବରୁଣ, ଅଗ୍ନି, ଯମ ଓ ମିତ୍ର - ପାଞ୍ଚଜଣ ଦେବତା ଦେବଗୋଷ୍ଠୀର ପ୍ରତିନିଧିମୂଳକ । ଇନ୍ଦ୍ର (ଦେବରାଜ) ପଦବୀ ଏହିମାନଙ୍କ ମଧ୍ୟରେ ଅବସ୍ଥା ପରିପ୍ରେକ୍ଷୀରେ ପରିବର୍ତ୍ତିତ ହୋଇଥାଏ । ଫଳତଃ ଇନ୍ଦ୍ରାଣୀପଦରେ ଅଧିଷ୍ଠିତ ଶଚୀ ଘଟଣାକ୍ରମେ ଏହି ପାଞ୍ଚଜଣଙ୍କ ସହିତ ସମ୍ବନ୍ଧିତ ଏବଂ

ତାହାହିଁ ମର୍ଯ୍ୟାଦା ଓ ଅବଧି । ଶଚୀଙ୍କର କନ୍ୟାଭାବ ଶାଶ୍ୱତ । ଦେବକନ୍ୟା ଓ ଅପ୍ସରାମାନଙ୍କର କୌମାର୍ଯ୍ୟ କୌଣସି ଅବସ୍ଥାରେ ନଷ୍ଟ ହୁଏ ନାହିଁ ଏହାହିଁ ନିଷ୍କର୍ଷ । କିନ୍ତୁ ମର୍ତ୍ତ୍ୟଲୋକରେ ମଣିଷମାନଙ୍କ ଧାରା ଭିନ୍ନ । ଏହା ସଂସ୍କୃତିଗତ ଦୃଷ୍ଟିଭଙ୍ଗୀ ଅଥବା ଭୂଗୋଳଭିତ୍ତିକ ସଂସ୍କୃତି ବିଚାର । ପୁରାଣବର୍ଣ୍ଣିତ ଅହଲ୍ୟା ପ୍ରଭୃତି ପାଞ୍ଚଜଣ ନାରୀଚରିତ୍ର କୌଣସି ନା କୌଣସି ଭାବରେ ଦେବତା କିମ୍ବା ଅପ୍ସରାସଂସ୍କୃତି ସହିତ ସମ୍ବନ୍ଧିତ । ସେମାନେ କୌଣସି ସ୍ଥଳରେ ସ୍ୱୈରାଚାରିଣୀ ହୋଇ ନାହାନ୍ତି ଅଥବା ମିଥ୍ୟାଚରଣ କରି ନାହାନ୍ତି । ଅବସ୍ଥାବଶତଃ ଏକାଧିକ ପୁରୁଷଙ୍କ ସମ୍ବନ୍ଧରେ ଆସିଥିଲେ ମଧ୍ୟ ସ୍ୱାମୀଙ୍କ ପ୍ରତି ଅଖଣ୍ଡ ଅନୁରକ୍ତି ରକ୍ଷାକରିଛନ୍ତି । ସେମାନଙ୍କ ଅବସ୍ଥାବିଶେଷକୁ ବିଚାରକରି ମାନବବାଦୀ ଋଷିମାନେ ସେମାନଙ୍କୁ ଶାଶ୍ୱତକନ୍ୟାର ଐଶ୍ୱର୍ଯ୍ୟରେ ଭୂଷିତ କରିଛନ୍ତି । ଯେଉଁ କାରଣପାଇଁ ବିଶ୍ୱାମିତ୍ର ଓ ଶ୍ରୀରାମ ତପସ୍ୱିନୀ ଅହଲ୍ୟାଙ୍କୁ ସମ୍ମାନ ଜଣାଇ ସାମାଜିକ ବିଦ୍ରୂପରୁ ଉଦ୍ଧାର କରିଛନ୍ତି, ଠିକ୍ ଅନୁରୂପ କାରଣବଶତଃ ଅହଲ୍ୟାସମେତ ପାଞ୍ଚଟି ନାରୀଚରିତ୍ର ଶାଶ୍ୱତକନ୍ୟାରୂପେ ଋଷିମାନଙ୍କଦ୍ୱାରା କୀର୍ତ୍ତିତ ହୋଇଛନ୍ତି । ନାରୀମାନଙ୍କ ସାମାଜିକ ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିବାପାଇଁ ଏହା ଆର୍ଷକରୁଣା । ଦେବତା ଓ ଅପ୍ସରା ସଂସ୍କୃତି ପ୍ରତି ମଧ୍ୟ ତଦ୍ଦ୍ୱାରା ଅବସ୍ଥାନୁରୂପ ସ୍ୱୀକୃତି ପ୍ରକାଶ ପାଇଛି ।

ଇତିହାସର ବିବର୍ତ୍ତନ ମଧ୍ୟରେ ଅହଲ୍ୟାଚରିତ୍ର ଭିନ୍ନ ଭିନ୍ନ ରୂପ ନେଇଛି । ମୂଳତଃ ଅହଲ୍ୟା ଦେବୀସତ୍ତା, ରୂପକଳ୍ପରେ ପୁରାଣ ଆଖ୍ୟାନକୁ ଆସିଛନ୍ତି । ଗୌତମଙ୍କ ପତ୍ନୀରୂପେ ମଧ୍ୟ ଚିତ୍ରିତ । ତାଙ୍କର ମାନବୀୟ ଚରିତ୍ର ବିଭିନ୍ନ ପ୍ରତିକୂଳ ଅବସ୍ଥାଦେଇ ଗତିକରିଛି । ସ୍ୱାମୀଙ୍କ ପ୍ରତି ଅଖଣ୍ଡ ଅନୁରକ୍ତି ସତ୍ତ୍ୱେ ଛଳିତ ପରିବେଶରେ ପ୍ରବଞ୍ଚିତ ହୋଇ ସାମାଜିକ ବିଦ୍ରୂପ ସହ୍ୟ କରିଛନ୍ତି । ରାମାୟଣ ହେଉଛି ଆଦର୍ଶ-ଭିତ୍ତିକ ମହାକାବ୍ୟ । ମାନବିକ କରୁଣା ଏହାର ରସସତ୍ତାର ଉତ୍ସ । ଏଥିରେ ଜନସାଧାରଣଙ୍କ ସୁରକ୍ଷା ଓ ଉଦ୍ଧାରର ବାର୍ତ୍ତା ସନ୍ନିହିତ । ମହର୍ଷି ବିଶ୍ୱାମିତ୍ର ଓ ଶ୍ରୀରାମଙ୍କ କାରୁଣିକ ସତ୍ତ୍ୱକୁ ସଂପ୍ରସାରିତ କରିବା ଅଭିଲକ୍ଷ୍ୟରେ ଏହି ଆଖ୍ୟାନ ରାମାୟଣରେ ଉପନ୍ୟସ୍ତ । ଅଧିକନ୍ତୁ ମିଥିଳାକୁ ଯିବାପୂର୍ବରୁ ରାମଚନ୍ଦ୍ର ତପସ୍ୱିନୀ ଅହଲ୍ୟାଙ୍କର ଆଶୀର୍ବାଦ ଲାଭକରି ଆତ୍ମିକ ସମ୍ବେଦନା ଓ ପ୍ରାଣପ୍ରାଚୁର୍ଯ୍ୟ ଲାଭକରିଛନ୍ତି । ରାମାୟଣର କଥାସ୍ରୋତରେ ଅପହରଣ ଓ ଉଦ୍ଧାରର ବାର୍ତ୍ତା ଯେତିକି କରୁଣ, ତଦନୁରୂପ ସମ୍ବେଦନଶୀଳ । ସୀତା, ଅହଲ୍ୟା, ସନାତନୀ ସଂସ୍କୃତି ସମସ୍ତେ ପ୍ରତୀପଶକ୍ତିଦ୍ୱାରା ଅପହୃତ, ଲାଞ୍ଛିତ । ଶ୍ରୀରାମ

ସମସ୍ତଙ୍କୁ ଉଦ୍ଧାର କରିଛନ୍ତି । ଜଗତର ତ୍ରାଣକର୍ତ୍ତାରୂପେ ତାଙ୍କର ସତ୍ତ୍ୱାଂଶ ସଂଘଟିତ ହୋଇଛି ।

ମହାକବି ବାଲ୍ମୀକି ମଣିଷଚରିତ୍ର ଉପରେ ଗୌରବ ଦେଇଛନ୍ତି । ଦେବତାମାନଙ୍କ ଚରିତ୍ର ଦୟନୀୟ ଅଥବା ବିଡ଼ମ୍ବିତ ହୋଇଗଲାଣି । ରାକ୍ଷସମାନଙ୍କ ଦୁର୍ଦ୍ଧର୍ଷ ପ୍ରବୃତ୍ତିର ସମ୍ମୁଖୀନ ହେବା ସେମାନଙ୍କ ପକ୍ଷରେ ଅସମ୍ଭବ । ବସ୍ତୁତଃ ସେମାନେ ମଣିଷସମାଜ ପାଖରେ ଆଶ୍ରୟ ଲୋଡ଼ିଛନ୍ତି । କେତେକ ସ୍ଥଳରେ ଦେବସଂସ୍କୃତି ମଣିଷର ବିଚାରଧାରାରେ ଅଙ୍ଗୀଭୂତ ହୋଇ ସ୍ୱତନ୍ତ୍ର ସତ୍ତା ହରାଇଛି । ସାମ୍ୟ, ମୈତ୍ରୀ, ସମ୍ଭ୍ରମ, କରୁଣା ପ୍ରଭୃତି ଦେବଗୁଣ ଶ୍ରୀରାମଙ୍କ ମାଧ୍ୟମରେ ମଣିଷର ଆଚାରବିଚାରର ସତ୍ତ୍ୱାଂଶରୂପେ ସୁପ୍ରତିଷ୍ଠ ଏବଂ ସଂପ୍ରସାରିତ ହୋଇଛି । ନୀତିନିଷ୍ଠ ଆଚାର, ବିଚାର, ତପସ୍ୟା, ଆତ୍ମନିରୀକ୍ଷଣ, ସାମଗ୍ରିକ କରୁଣା ଏବଂ କର୍ତ୍ତବ୍ୟବୋଧର ପ୍ରତିଫଳନରେ ଶ୍ରୀରାମ ଯୁଗପୁରୁଷରୂପେ ଉତ୍ତରିତ ହୋଇଛନ୍ତି । ସେ ଶରଣବତ୍ସଳ ଓ ତ୍ରାଣକର୍ତ୍ତା । ତାଙ୍କ ସମ୍ମୁଖରେ ସାମାଜିକ ଓ ଶାସନତାନ୍ତ୍ରିକ ଯନ୍ତ୍ରଣାଗୁଡ଼ିକୁ ମହର୍ଷି ଉପସ୍ଥାପିତ କରି ଦେଇଛନ୍ତି । ତରୁଣ ରାମଙ୍କ ହୃଦୟରେ ରାଜାଧିରାଜ ରାମଙ୍କୁ ଜାଗ୍ରତ କରିବାପାଇଁ ବିଶ୍ୱାମିତ୍ର ତାଙ୍କୁ ସିଦ୍ଧାଶ୍ରମକୁ ଆଣିଥିଲେ । ରାକ୍ଷସମାନଙ୍କର ଭୟଙ୍କର ଅତ୍ୟାଚାର ଓ ଆର୍ଯ୍ୟସଂସ୍କୃତିର ଦୁର୍ଦ୍ଦଶାକୁ ସେ ସ୍ୱଚକ୍ଷୁରେ ଦେଖିଲେ ଏବଂ ଉପଲବ୍ଧି କଲେ । ସିଦ୍ଧାଶ୍ରମକୁ ରକ୍ଷାକରି ସେ ଆଂଶିକଭାବରେ ପ୍ରତିକାର ମଧ୍ୟ କରିଛନ୍ତି । କିନ୍ତୁ ଏହି ଅତ୍ୟାଚାରର ମୂଳଉତ୍ସ ସୁଦୂର ଲଙ୍କାରେ । ରାବଣ ହେଉଛି ଭୟଙ୍କର ଅପଶକ୍ତି । ତା'ର କବଳରୁ ଦେଶ ଓ ସଂସ୍କୃତିକୁ ଉଦ୍ଧାର କରିବାକୁ ହେବ । ସେଥିପାଇଁ ଯନ୍ତ୍ରଣାର ପ୍ରକାରଭେଦ ଜାଣିବା ଆବଶ୍ୟକ । ଜମ୍ବୁଦ୍ୱୀପର ନାରୀକୁଳ ଓ ଭୂମିକନ୍ୟାମାନେ କେବଳ ରାକ୍ଷସମାନଙ୍କଦ୍ୱାରା ଅପହୃତ ଓ ଲାଞ୍ଛିତ ହେଉ ନାହାନ୍ତି; ଅବସ୍ଥାଭେଦରେ ସ୍ୱକୀୟସଂସ୍କୃତିର ପ୍ରବକ୍ତା ତଥା ଦେବତାମାନଙ୍କଦ୍ୱାରା ମଧ୍ୟ ପ୍ରତାରିତ ହୋଇ ଯାଉଛନ୍ତି । ସେଥିରୁ ମଧ୍ୟ ସେମାନଙ୍କୁ ଉଦ୍ଧାର କରିବାକୁ ହେବ । ଏହି ସଂସ୍କାର ପ୍ରୟାସ ଓ ମାନବିକ ମୂଲ୍ୟବୋଧର ସଂପ୍ରସାରଣପାଇଁ ମହର୍ଷି ଶ୍ରୀରାମଙ୍କୁ ବିଦେହମାର୍ଗରେ ଗୌତମଙ୍କ ପରିତ୍ୟକ୍ତ ଆଶ୍ରମପର୍ଯ୍ୟନ୍ତ ନେଇଆସିଛନ୍ତି । ତାଙ୍କ ସମ୍ମୁଖରେ ଅହଲ୍ୟାଙ୍କ ଜୀବନର କରୁଣବେଦନା, ସାମାଜିକ ଲାଞ୍ଛନା ଓ ଉଦଗ୍ର ତପଶ୍ଚରଣର ବିବରଣୀ ଉପସ୍ଥାପନ କରିଦେଇଛନ୍ତି । ଶ୍ରୀରାମଙ୍କ ଦୟାର୍ଦ୍ର ଚିତ୍ତ ଅହଲ୍ୟାଙ୍କ ଫଳୋଦୟାନ୍ତ ତପସ୍ୟାରେ ବିଗଳିତ ହୋଇଯାଇଛି । ସେ ତପସ୍ୱିନୀଙ୍କର ପଦବନ୍ଦନା କରିଛନ୍ତି ।

ସ୍ନେହସିକ୍ତ ହୃଦୟରେ ଅହଲ୍ୟା ସଶିଷ୍ୟ ବିଶ୍ୱାମିତ୍ର ଓ ରାଜପୁତ୍ର ରାମଲକ୍ଷ୍ମଣଙ୍କୁ ଆତିଥ୍ୟ ପ୍ରଦାନକରି ଯୁଗଯୁଗର ବେଦନାରୁ ନିଷ୍କୃତି ପାଇଛନ୍ତି । ଋଷିପତ୍ନୀଭାବରେ ସେ ନିଜର ପୂର୍ବସମ୍ମାନ ଫେରି ପାଇଛନ୍ତି ।

ଅହଲ୍ୟାଙ୍କର କରୁଣ କାହାଣୀ ମଧ୍ୟରେ ନାରୀହୃଦୟର ଯୁଗଯୁଗର ବ୍ୟଥା ସଞ୍ଚିତ । ସେ ଋଷିପତ୍ନୀ ହୁଅନ୍ତୁ ଅଥବା ପ୍ରକୃତି ରାଜ୍ୟର ଏକ ରୂପକଳ୍ପ ହୁଅନ୍ତୁ; ଉଭୟ ଦୃଷ୍ଟିରୁ ଶ୍ରୀରାମ ତାଙ୍କର ତ୍ରାଣକର୍ତ୍ତାରୂପେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଜଣେ ତପସ୍ୱିନୀ ତଥା ପଶ୍ଚାତ୍ତାପରେ ଅନ୍ତର୍ଦଗ୍ଧା ନାରୀଙ୍କୁ ସାମାଜିକ ତଥା ରାଷ୍ଟ୍ରୀୟସମ୍ମାନ ଦେଇ ସ୍ୱକୀୟ ଉଦାରତାର ପରିଚୟ ଦେଇଛନ୍ତି । ପ୍ରେରଣାତ୍ମକ ଗାୟତ୍ରୀମାତାଙ୍କୁ ଯଥାର୍ଥତଃ ଅବଧାରଣା କରି ନିଜକୁ ଉନ୍ନୀତ କରିବା ସହିତ ସେହି ମହାବିଦ୍ୟାଙ୍କୁ ଯଥାର୍ଥ ସମ୍ମାନ ଜଣାଇ ସୁରକ୍ଷା ଦେଇଛନ୍ତି; ସୁଶିଷ୍ୟନ୍ୟସ୍ତ ବିଦ୍ୟା ସଦୃଶ 'ଅହଲ୍ୟା' ସୁରକ୍ଷିତ ହୋଇଛନ୍ତି ।

# ଅହଲ୍ୟା [ ଶତକ ]

## ଏକ

ସେ ଏକ ବିବିକ୍ତ ଉଷା ଗୌତମଙ୍କ ଆଶ୍ରମପ୍ରାନ୍ତରେ
ମହାତପା ଧ୍ୟାନମଗ୍ନ ତପସ୍ୟାର ଅତଳସାଗରେ
ବିଦେହର ପଥପ୍ରାନ୍ତେ ତପସ୍ୟାର ଅପୂର୍ବ ଉଲ୍ଲାସ
ଯୋଗନିଦ୍ର ସ୍ଥିରତନୁ, ବନାନୀର ଚପଳ ପରଶ ।।୧।।

ଅନନ୍ତ ସମୟସ୍ରୋତେ ଆଶାୟିତ ଅହଲ୍ୟାହୃଦୟ
ଫେରିବେ ତ ତପୋଧନ ପାଇବେ ସେ ନିଷ୍ପାପ ପ୍ରଣୟ
ପ୍ରତୀକ୍ଷାରେ ଯାଏ ଦିନ ଏକବେଣୀ ଅଶ୍ରୁଳ ନେତ୍ରାନ୍ତ
ଆଶ୍ରମେ ରହିଛି ତନୁ ଗୌତମରେ ପ୍ରାଣସନ୍ତର୍ପିତ ।।୨।।

ରହିଛି ଅଞ୍ଜନା ପାଶେ ତପସ୍ୟାର କଳ୍ପତରୁ ଫଳ
ସଂଯମର ପ୍ରତିମୂର୍ତ୍ତି ଗୌତମଙ୍କ ହୃଦୟକମଳ
ପ୍ରତୀକ୍ଷାରେ ଅପଚିତ ଅହଲ୍ୟାର ଅନିନ୍ଦ୍ୟତନିମା
କୁମାରୀ ଅଞ୍ଜନାହୃଦେ ପ୍ରଶାନ୍ତିର ଅଖଣ୍ଡ ଗରିମା ।।୩।।

ଦିନ ମାସ ବର୍ଷ ଗଲା ନ ଆସିଲେ ନିଷ୍ପାପ ଅତନୁ
ବିରହର ରୌଦ୍ରତାପେ ଅହଲ୍ୟାର ସନ୍ତାପିତ ତନୁ
ନିଭୃତ ଅନ୍ତରେ ଦାହ ସଂଗୋପିତ କାମନାର କୋହ
ବର୍ଷାର ଆସାରବାରି କେତକୀର ନିଷ୍ଫଳ ସନ୍ଦୋହ ।।୪।।



ନ ଆସିଲେ ତପୋଧନ ଆଜିର ଏ ଶ୍ରାବଣୀ ଆସର
ଝରିପଡ଼େ ଅହଲ୍ୟାର ଗଭା ମଧୁ କଦମ୍ବକେଶର

ଆସିଲା ଶ୍ରାବଣୀକନ୍ୟା ଘନକେଶା ସ୍ୱୈରିଣୀ ପୁଂଶ୍ଚଳୀ
କମ୍ପିତ ଉରଜେ ତାର ବିଜୁଳିର ଶିହରଣ ତୋଳି
ବହିଲା ଘନଉଚ୍ଛ୍ୱାସ କଣ୍ଠେ ଶୋଭେ ମେଘର ମହ୍ଲାର
ବକ୍ଷଦେଶେ ଦୋଳାୟିତ ଯୂଇ ଜାଈ ମାଳତୀର ହାର ।।୫।।

ଉଜାଣି ବହିଲା ବାରି ବିପରୀତ ରତିର ସୋହାଗେ
ଶ୍ୟାମଘନ ହୃଦୟରେ ଶ୍ରୀରାଧାର ବିଜୁଳି ଚମକେ
ନ ଆସିଲେ ତପୋଧନ ଆଜିର ଏ ଶ୍ରାବଣୀ ଆସର
ଝରିପଡ଼େ ଅହଲ୍ୟାର ଗଭା ମଧୁ କଦମ୍ବକେଶର ।।୬।।

ଆସିଲେ ଶରତବଧୂ ଦର୍ପକର ସ୍ୱଚ୍ଛ ଦରପଣ
ଶେଫାଳୀ ସୁହାସେ ତାର ପ୍ରୀତିସ୍ନିଗ୍ଧ ଅମିୟ ବଚନ
ସନ୍ତର୍ପଣେ ନବକାନ୍ତା ପଦେ ତୋଳି ମରାଳର ଗତି
ପ୍ରବେଶି ବାସର ଗୃହେ ଲାବଣ୍ୟର ଅପୂର୍ବ ମୂରତି ।।୭।।

ଅଧରରୁ ଝରିପଡ଼େ ମନ୍ଦହାସ ଚୂନିଚୂନି ବିନ୍ଦୁ
ଗୁମ୍ଫିତ କବରୀତଳେ ଶୋଭାପାଏ ପୂର୍ଣ୍ଣିମାର ଇନ୍ଦୁ
ଚନ୍ଦ୍ରମାର ଜ୍ୟୋତ୍ସ୍ନା ବନ୍ୟା ମିଳନର ଅପୂର୍ବ ସଙ୍କେତ
ଆକାଶ ଧରଣୀ ଆଜି ପ୍ରଣୟରେ ହୋଇଲେ ଉଦାତ୍ତ।।୮।।

ନ ଆସିଲେ ଅହଲ୍ୟାର ପ୍ରେମଧନ ଗୌତମ ତାପସ
ତପସ୍ୱିନୀ ନୟନରୁ ଝରିପଡ଼େ ଅବିରଳ ଅସ୍ର
ଆକାଶେ ଚନ୍ଦ୍ରିକା ଆଜି ଅହଲ୍ୟାର ହୃଦେ ଅନ୍ଧକାର
ବାସକସଜ୍ଜା ଧରଣୀ ରିକ୍ତ ସତେ ଅହଲ୍ୟା ଅନ୍ତର ।।୯।।



ଆକାଶେ ଚନ୍ଦ୍ରିକା ଆଜି ଅହଲ୍ୟାର ହୃଦେ ଅନ୍ଧକାର
ବାସକସଜ୍ଜା ଧରଣୀ ରିକ୍ତ ସତେ ଅହଲ୍ୟା ଅନ୍ତର

ପ୍ରତୀକ୍ଷାର ମରୀଚିକା, ଶୁଷ୍କ ଆଜି ଅହଲ୍ୟା ତନିମା
ବିଲମ୍ବିତ କେଶଗୁଚ୍ଛ ପିଙ୍ଗଳାଗ୍ର ବଭ୍ରୁଳ ରଙ୍ଗିମା
ଆଶାର ପ୍ରଦୀପେ ତାର ଧୂମାୟିତ ନିର୍ବାଣର ଶିଖା
ନିଷ୍ଫଳ ନାରୀତ୍ୱ ତାର ସତେ ଅବା ଉଷର ମୃତ୍ତିକା ॥୧୦॥

ସେଦିନ ଆସିଲା ଉଷା ଲାସ୍ୟମୟୀ ଆକାଶର କନ୍ୟା
ଅନୁରାଗେ ବିଞ୍ଚିଦେଲା ପୁଷ୍ପରେଣୁ ସୁନୀଳବସନା
ସୋହାଗେ ଗାଇଲା ଗୀତ ମଧୁପର ଅସ୍ଫୁଟ ଗୁଞ୍ଜନେ
ଉଲ୍ଲସିତ ତରୁଲତା ବସନ୍ତର ମଧୁମତ୍ତ ସ୍ୱନେ ॥୧୧॥

ରଜୋବତୀ ବନଦେବୀ ପଲ୍ଲବରେ ଶ୍ରୀରଙ୍ଗବସନ
କୁନ୍ତଳର ସ୍ମିତହାସ୍ୟ ପିକକଣ୍ଠେ ଅମିୟବଚନ
ହିଲ୍ଲୋଳର କମ୍ପ୍ରସ୍ପର୍ଶେ ଉଲ୍ଲାସର ଅପୂର୍ବ ସଙ୍କେତ
ନାରୀର ହୃଦୟେ ଆଜି କାମିନୀର ଆଶା ସଂଗୋପିତ ॥୧୨॥

ଲୀଳାୟିତ ହାବଭାବ ଅଙ୍ଗେ ତାର ଅପୂର୍ବ ବଚ୍ଛିତି
ବିବ୍ବୋକର ବିଜୃମ୍ଭଣ ଲାସ୍ୟହାସ୍ୟ ଅମିୟ ସୁରତି
ଶିହରିତ ଅଙ୍ଗଯଷ୍ଟି ଲାବଣ୍ୟର କଂପିତ ତରଙ୍ଗ
ଲତାର ବିଳାସ ସତେ ହରିଣୀର ଚଟୁଳ ଭ୍ରୂଭଙ୍ଗ ॥୧୩॥

ସେ ଏକ ବିବିକ୍ତ ଉଷା ଗୌତମଙ୍କ ଆଶ୍ରମ ପ୍ରାନ୍ତରେ
ମହାତପା ଧ୍ୟାନମଗ୍ନ ତପସ୍ୟାର ଅତଳ ସାଗରେ
ଆଶ୍ରମର କୁଲ୍ୟାଜଳେ ସଦ୍ୟସ୍ନାତା ଅହଲ୍ୟାସୁନ୍ଦରୀ
ଆଲୁଳିତ ଅଳକାରୁ ଝରିପଡ଼େ ବିନ୍ଦୁ ବିନ୍ଦୁ ବାରି ॥୧୪॥



ଆଶ୍ରମେ ରଚିବି ମୁହିଁ ନିଧୁବନ ପ୍ରଣୟର ଶଯ୍ୟା
ନ ଓଗାଳ ପଥପ୍ରାନ୍ତେ, ତୁମ ପଥେ ମୁଁ ବାସକସଜ୍ଜା

ରସାଣିତ ଶୁଭ୍ରତନୁ ଲତାୟିତ ଚପଳାର ରେଖା
ଆମୁକ୍ତ ଉରଜ ସତେ ଅର୍ଦ୍ଧୋନ୍ମୁକ୍ତ କମଳକଳିକା
ପ୍ରଲୁବ୍ଧ ମଧୁପଶ୍ରେଣୀ ବିଚ୍ଛୁରିତ ପଦ୍ମର ସୌରଭ
ଗଣ୍ଡଦେଶୁ ନିସ୍ୟନ୍ଦିତ ଯୌବନର ଅମୃତ ଆସବ ॥୧୫॥

ଦିଗ୍ଗଜବାହନେ ବୃଷା ଫେରୁଥିଲେ ବୈଜୟନ୍ତୀପୁରେ
ନାଚୁଥିଲେ ଦିଗଙ୍ଗନା ମୁକ୍ତରଜ ପ୍ରଭାତ ସମୀରେ
ଗାଉଥିଲେ ବିଦ୍ୟାଧରୀ ଝରୁଥିଲା ପାରିଜାତ ଦଳ
ମୁକ୍ତକେଶୀ ଅହଲ୍ୟାର ହୃଦୟରେ ବିରହ ଅନଳ ॥୧୬॥

ଉତ୍ତରିଲେ ଦେବରାଜ ଅତନୁରେ କଂପିତ ଶରୀର
ମାୟାରେ ଗୌତମରୂପ, ଅହଲ୍ୟାର ଅନ୍ତର ଉଦ୍‌ବେଳ
ପଞ୍ଚମେ ଗାଇଲା ପିକ ମଧୁମତ୍ତ ଭ୍ରମର ଗୁଞ୍ଜନ
ବିରହିଣୀ ଅହଲ୍ୟାର ନେତ୍ର ସତେ ଲଭିଲା ନିର୍ବାଣ ॥୧୭॥

ଉଚ୍ଛ୍ୱାସେ କହିଲା ପ୍ରିୟ, କାହିଁ ମୋରେ କର ବିଡ଼ମ୍ବନା
ମୁହିଁ ଚିର ଅଭାଗିନୀ ନାରୀତ୍ୱ ମୋ ଦୁର୍ବାର ବାସନା
ଆଶ୍ରମେ ରଚିବି ମୁହିଁ ନିଧୁବନ ପ୍ରଣୟର ଶଯ୍ୟା
ନ ଓଗାଳ ପଥପ୍ରାନ୍ତେ, ତୁମ ପଥେ ମୁଁ ବାସକସଜ୍ଜା ॥୧୮॥

କାମାୟନେ ଦେବରାଜ ଦେଲେ ତାରେ ପ୍ରଣୟର ସ୍ପର୍ଶ
ଅତନୁର ପଞ୍ଚପୁଷ୍ପେ ଅହଲ୍ୟାର ଶରୀରେ ଆବେଶ
ଶିହରିତ ତନୁଲତା ଗଣ୍ଡଦେଶେ ବ୍ରୀଡ଼ା ପାଟଳିମା
ଅଧରରୁ ଝରିପଡ଼େ ପଲ୍ଲବର କମ୍ର ଅରୁଣିମା ।୧୯॥

ପୁଲକିତ କପୋଳରେ ସ୍ୱେଦାମ୍ବୁର ନିବୀତ ଚର୍ଚ୍ଚିକା
ଶିହରିତ ବକ୍ଷଦେଶ, ସତେଅବା ସମ୍ମୋହନ ଶିଖା
ଅହଲ୍ୟାର ମରୁହୃଦେ ସତେ ଆଜି ପ୍ରଣୟର ବନ୍ୟା
କଙ୍କରିଳ ଶିଳାଦେହେ ଦୂର୍ବାଦଳ ନବଶ୍ୟାମଳିମା ॥୨୦॥

ପାଦଧରି ଅହଲ୍ୟାର ଦେବରାଜ କଲେ କ୍ଷମାଭିକ୍ଷା
ନୁହେଁ ମୁଁ ଗୌତମ, ଦେବୀ ନାହିଁ ମୋର ତପସ୍ୟାର ଦୀକ୍ଷା
ପ୍ରଥମବୟସୀ ତୁମେ ଲାବଣ୍ୟର ଅପୂର୍ବ ସଂଭାର
ହେଲି ମୁଁ ରୂପରେ ମୁଗ୍ଧ ସୃଷ୍ଟି କଲି ମାୟା କଳେବର ॥୨୧॥

ନ ଦିଅ ଗୋ ଅଭିଶାପ ନ କର ଗୋ ମୋତେ ବିଡ଼ମ୍ବିତ
ଅନନ୍ତଯୌବନା ତୁମେ ସହିନିଅ ପ୍ରଥମ ଦୁଷ୍କୃତ
ନ ଆଣ ଗୋ ମନେ ଖେଦ, ମୋର ବରେ ହୁଅ ଗୋ ପାବନୀ
ପୁଣ୍ୟଶ୍ଳୋକା ଭଦ୍ରା ତୁମେ ଅଭିଶାପେ ମୁଁ ସହସ୍ରଯୋନି ॥୨୨॥

ରସାଣିତ ତନୁ ତବ ନିଷିକ୍ତ ମୋ ଶକ୍ତିରେ ସୁରତି
ଜନ୍ମଦେବ ମୋ ସନ୍ତାନେ ମହାବଳୀ ଅପୂର୍ବ ମୂରତି
ଅଜେୟ ହୋଇବ ପୁତ୍ର ଯାଉଛି ମୁଁ ଦିଅ ଗୋ ବିଦାୟ
ଇନ୍ଦ୍ରର ପ୍ରଣୟ ସଖୀ ନ ଭୁଲିବ ଘେନ ମୋ ବିନୟ ॥୨୩॥

ଅହଲ୍ୟାର ମନେ ଦ୍ୱନ୍ଦ୍ୱ ନ ପାରିଲା ଦେଇ ଅଭିଶାପ
ପ୍ରବୃତ୍ତିର ସାନୁକ୍ରୋଶେ ମନେ ତାର ବହୁ ଅନୁତାପ
ବିଧିର ବିଧାନ ତନ୍ୱୀ ସହିନେଲା କପାଳ ଆଦରି
ଆସିଲେ ଗୌତମମୁନି ଅହଲ୍ୟାର ନେତ୍ରୁ ବହେ ବାରି ॥୨୪॥

ପୁଚ୍ଛିଲେ ଗୌତମ, ସଖୀ, ମନେ କିପାଁ ବିଷାଦର ଛାୟା
ନ କହିଲା ମୌନାବତୀ ଥରିଉଠେ ଅହଲ୍ୟାର କାୟା
କୋଳେ ଧରି ମହାତପା ଦେଲେ ତାକୁ ତପସ୍ୱୀର ସ୍ନେହ
ସରସ ଅହଲ୍ୟାତନୁ ମନେ ତାର ନାରୀର ସନ୍ଦେହ ।।୨୫।।

ଫେରିଗଲେ ମହାତପା ସାଧିବାକୁ ନିଷ୍ଠୁର ତପସ୍ୟା
ତପସ୍ୱିନୀ ରହିଗଲା ସତେ ଅବା ନିର୍ବାଣର ଉଷା
ଯଥାକାଳେ ଜନ୍ମନେଲେ ମହାବଳୀ ଇନ୍ଦ୍ରର ସନ୍ତାନ
ଆଶ୍ରମର ପୂର୍ଣ୍ଣଚନ୍ଦ୍ର, ଅହଲ୍ୟାର କୋଟି ଗଣ୍ଡିଧନ ।।୨୬।।

## ଦୁଇ

ସେ ଏକ ବିବିକ୍ତ ଉଷା ଗୌତମଙ୍କ ଆଶ୍ରମପ୍ରାନ୍ତରେ
ମହାତପା ଧ୍ୟାନମଗ୍ନ ତପସ୍ୟାର ଅତଳସାଗରେ
ଆଶ୍ରମର ପୁଣ୍ୟନୀରେ ଶୁଦ୍ଧସ୍ନାତା ଅହଲ୍ୟାସୁନ୍ଦରୀ
ପ୍ରାଚୀ ନଭେ ସୂର୍ଯ୍ୟଦେବ, ରଥେ ଉଭା ପିଙ୍ଗଳ କେଶରୀ ।।୨୭।।

ଅହଲ୍ୟା ବନ୍ଦିଲା ମୁଦେ ସୂର୍ଯ୍ୟଙ୍କର ବର୍ତ୍ତୁଳ ମୂରତି
ଆଙ୍କିଦେଲା କୁଲ୍ୟାତଟେ ହରିଦ୍ରାର କମଳ ବିଚ୍ଛିତି
ସେ କମଳ ନିବେଦିଲା ମୁଗ୍ଧହେଲେ ପଦ୍ମିନୀବାନ୍ଧବ
ଅହଲ୍ୟାର ସିକ୍ତ ତନୁ, ସ୍ପର୍ଶ କଲା ପ୍ରଣୟର ଭାବ ।।୨୮।।

ହିରଣ୍ମୟକରେ ଦେବ ଅହଲ୍ୟାକୁ କଲେ ଆଲିଙ୍ଗନ
ଆମୁକ୍ତ ଅହଲ୍ୟାନାଭି ସ୍ପର୍ଶକଲା କନକକିରଣ
ଶିହରିତ ପଦ୍ମମୁଦ୍ରା ସେ କିରଣେ ହେଲା ସମ୍ପାତିତ
ସ୍ୱେଦାମ୍ବୁପୂରିତ ତନୁ ସତେ ଅବା ହୋଇବ ମୂର୍ଚ୍ଛିତ ।।୨୯।।



ଅହଲ୍ୟା ବନ୍ଦିଲା ମୁଦେ ସୂର୍ଯ୍ୟଙ୍କର ବର୍ତ୍ତୁଳ ମୂରତି
ଆଙ୍କିଦେଲା କୁଲ୍ୟାତଟେ ହରିଦ୍ରାର କମଳ ବିଛିତି
ସେ କମଳ ନିବେଦିଲା ମୁଗ୍ଧହେଲେ ପଦ୍ମିନୀବାନ୍ଧବ
ଅହଲ୍ୟାର ସିକ୍ତ ତନୁ, ସ୍ପର୍ଶ କଲା ପ୍ରଣୟର ଭାବ

ଉତ୍ତରିଲେ ହିରଣ୍ମୟ ରଥୁ ଦେବ ସହସ୍ରଦୀଧିତି
ଶୁଣ ଗୋ ଗୌତମବଧୂ ଦେଲ ମୋତେ ଅପୂର୍ବ ସୁରତି
ଯାଉଛି ମୁଁ ନିଜପଥେ ଆଜିର ଏ ହେମନ୍ତ ସକାଳ
ସ୍ମରଣ ରଖିବ ସଖୀ ତୁମ ପ୍ରେମେ ହେଲି ମୁଁ ପାଗଳ ।।୩୦।।

ସାନୁକ୍ରୋଶା ନାରୀ ତୁମେ ଅଙ୍ଗେ ତୁମ ନିଷ୍ପାପ ତନିମା
ମୋ ତେଜେ ନିଷିକ୍ତ ତନୁ ନ ଆଣ ଗୋ ଖେଦ ଅନୁପମା
ଲଭିବ ସନ୍ତାନ ତୁମେ ମୋର ସମ ଅପୂର୍ବ କୀରତି
କ୍ଷମାଦିଅ ତପସ୍ୱିନୀ ମୁହିଁ ପରା ଦେବ ଛାୟାପତି ।।୩୧।।

ଥରିଲା ଅହଲ୍ୟାହୃଦ ସତେଅବା ଭୀତିସଞ୍ଚାରିତା
ଅନୁତାପ କରେ ଧନୀ ମନମଧ୍ୟେ ଗୌତମ ବନିତା
ଫେରିଲେ ସେ ମହାତପା କୃଶ ଆଜି ଅହଲ୍ୟା ସୁତନୁ
କାହିଁକି ବିଷାଦ ପ୍ରିୟେ ଦୂରକର ଦୁଃଖ ଆଜି ମନୁ ।।୩୨।।

ନ ଯିବି ମୁଁ ତୀର୍ଥେ ଆଉ ନ ରଚିବି କଠୋର ତପସ୍ୟା'
ଆଶ୍ରମରେ ଥିବି ସଖୀ ତୁମେ ମୋର ଅନ୍ତିମ ଭରସା
ଉଲ୍ଲସିତ ତପସ୍ୱିନୀ ନେତ୍ରୁବହେ ପ୍ରେମଅଶ୍ରୁବାରି
ଗୌତମ ହୋଇଲେ ପ୍ରୀତ ଉପଚିତ ଅହଲ୍ୟା ସୁନ୍ଦରୀ।।୩୩।।

ଯଥାକାଳେ ପ୍ରସବିଲେ ପୀତତନୁ ଅପୂର୍ବ ତନୟ
ଗୌତମ ହୋଇଲେ ମୁଗ୍ଧ, ଅହଲ୍ୟାର ମନେ ବଡ଼ ଭୟ
ସେଦିନ ମଧ୍ୟାହ୍ନେ ମୁନି କନ୍ଧେ ରଖି ସୁଗ୍ରୀବ ଓ ବାଳୀ
ଯାଉଥିଲେ ନିତ୍ୟସ୍ନାନେ ପାଶେ ଚାଲେ ଅଞ୍ଜନା କୁମାରୀ ।।୩୪।।

ବୈଶାଖର ରୌଦ୍ରତାପ ସୁକୁମାରୀ ନ ପାରିଲା ସହି
ବାଲୁକାର ଆସ୍ତରଣେ ସତେ ଅବା ପଥେ ଫୁଟେ ଖଇ
ସନ୍ତାପିତ କ୍ଲିଷ୍ଟତନୁ ମନେ ତା'ର କ୍ରୁଦ୍ଧ ଅଭିମାନ
ଗୌତମର କନ୍ୟା ସେହି, କିପାଇଁ ସେ ଭୋଗିବ କଷଣ ।।୩୫।।

ନ ପାରିବି ଚାଲି ମୁହିଁ କନ୍ଧେ ମୋତେ ନିଅ ହେ ଜନକ
କିପରି ବା ନେବି ତୋତେ, କନ୍ଧେ ମୋର ତନୁଜ ବାଳକ
ନ ପାରିଲା ସହି ଧନୀ, ଉପେକ୍ଷିତ ଔରସ ସନ୍ତାନ
ଗୌତମଙ୍କ କନ୍ଧେ ଯିବେ ସୁଖେ ବସି ଜାରଜ ସନ୍ତାନ।।୩୬।।

କମ୍ପିଗଲେ ମହାତପା କି କହିଲୁ ଅଞ୍ଜନାକୁମାରୀ
ଅହଲ୍ୟାର ସତୀତ୍ୱରେ କିପାଇଁ ତୁ ଦେଲୁ ବିଷ ଢାରି
ଫିଙ୍ଗିଦେଲେ ଦୁଇପୁତ୍ରେ ବୀଚିକ୍ଷୁବ୍ଧ ଜାହ୍ନବୀର ଜଳ
ସ୍ୱରୂପେ ଆସିବ ପୁତ୍ର ଯଦି ତୁମେ ଗୌତମ ଦୁଲାଳ ।।୩୭।।

ଅଞ୍ଜନାର କଥା ଯଦି ସତ୍ୟ ତେବେ ଘେନ ଅଭିଶାପ
ଉତ୍ତରିବ ତଟଦେଶେ ଦେହେ ବହି ମର୍କଟର ରୂପ
ଉତ୍ତରିଲେ ଦୁଇପୁତ୍ର ମୁଖ ତାଙ୍କ ପୀତ କପିଞ୍ଜଳ
ବିଷାଦ ଗୌତମତନୁ ରୋଷାୟିତ ବିକ୍ଷୁବ୍ଧ ଅନ୍ତର ।।୩୮।।

ଉତ୍‌ଶିଖ ପିଙ୍ଗଳଜଟା ଘ୍ରାଣୁବହେ ପ୍ରଳୟର ଶ୍ୱାସ
ଆକାଶ ପଡ଼ିବ ଭାଜି ତପୋବନେ ଭୀତିର ସଂତ୍ରାସ
ଆଶ୍ରମେ ରହିଛି ସତୀ ସ୍ୱାମୀଙ୍କର ଚଲାପଥ ଚାହିଁ
ପ୍ଲୁତପଦେ ବିବର୍ତ୍ତିଲେ ସତେଅବା ଧୂମକେତୁ ଛାଇ ।।୩୯।।



କହଲୋ ଅହଲ୍ୟା ନାରୀ କାହାର ଏ ତନୁଜ ବାଳକ
ଗୌତମର ତପୋବନେ ନ ରଖିଲୁ ମର୍ଯ୍ୟାଦାର ଟେକ
ଅତିକ୍ରମ କଲୁ ନାରୀ ପତିବ୍ରତା କୁଳର ମହିମା
ଉପେକ୍ଷିଲୁ ଗୌତମରେ ମାୟାବିନୀ କଳୁଷ କାଳିମା

କହଲୋ ଅହଲ୍ୟା ନାରୀ କାହାର ଏ ତନୁଜ ବାଳକ
ଗୌତମର ତପୋବନେ ନ ରଖିଲୁ ମର୍ଯ୍ୟାଦାର ଟେକ
ଅତିକ୍ରମ କଲୁ ନାରୀ ପତିବ୍ରତା କୁଳର ମହିମା
ଉପେକ୍ଷିଲୁ ଗୌତମରେ ମାୟାବିନୀ କଳୁଷ କାଳିମା ।।୪୦।।

ଘେନ ମୋର ଅଭିଶାପ ଆଜିଠାରୁ ହେବୁ ତୁ ପାଷାଣୀ
ଚାଲିଗଲେ ମହାତପା ଅହଲ୍ୟାର କର୍ଣ୍ଣେ ମୃତ୍ୟୁଧ୍ୱନି
ଅଞ୍ଜନାର ହୃଦେ ଭୀତି କିପାଇଁ ସେ କଲା ଅଭିମାନ
ନ ଜାଣିପାରିଲା ବାଳା ତା' କଥାର ଏତେ ପରିଣାମ।।୪୧।।

ମୂର୍ଚ୍ଛିତା ଅହଲ୍ୟାସତୀ ସ୍ୱାମୀଙ୍କର ନିଷ୍ଠୁର ବଚନେ
ଅନୁତାପେ ଅବସନ୍ନା କି କହିବ ଆଜି ତପୋଧନେ
ଅଞ୍ଜନା କାନ୍ଦଇ ପାଶେ କାନ୍ଦୁଛନ୍ତି ସୁଗ୍ରୀବ ଓ ବାଳୀ
ଅହଲ୍ୟାରେ ଅଭିଶାପ, ଘୁଞ୍ଚିଗଲା ଧରିତ୍ରୀ ସୁନ୍ଦରୀ ।।୪୨।।

ଥରିଉଠେ ଚକ୍ରବାଳ ଲୁପ୍ତହେଲା ଶସ୍ୟଶ୍ୟାମଳିମା
ଆକାଶେ ଥରିଲେ ଇନ୍ଦ୍ର ଶିହରିଲେ ମଧ୍ୟାହ୍ନ ଅର୍ଯ୍ୟମା
ରୁଦ୍ଧକଣ୍ଠେ ଋଷିପତ୍ନୀ ଅଞ୍ଜନାରେ ଦେଲେ ଅଭିଶାପ
ନାରୀ ହୋଇ ନ ଜାଣିଲୁ ନାରୀତ୍ୱର ଗୋପନ ସନ୍ତାପ ।।୪୩।।

କାୟମନୋବାକ୍ୟେ ଯଦି ସତୀ ଆଜି ଅହଲ୍ୟା ସୁନ୍ଦରୀ
ଘେନ ମୋର ଅଭିଶାପ ସ୍ୱାଭିମାନୀ ହେ ଦୃପ୍ତ କିଶୋରୀ
ଅନାୟତ୍ତ ଘଟଣାରେ ମୋର ନାମେ ବୋଳିଲୁ କାଳିମା
ଜାରଜ ସନ୍ତାନ ଲଭ ସତ୍ୟ ଯଦି ସୂର୍ଯ୍ୟ ଓ ଚନ୍ଦ୍ରମା ।।୪୪।।

ମନେ ବହି ମହାରୋଷ ପୁତ୍ରେ ମୋର କଲୁଲୋ ବାନର
ବାନର ଜନନୀ ହୁଅ, ଅଭିଶାପ ଆଜି ଏ ମାତାର

ପାଷାଣଶରୀରେ ସତୀ ଲୁପ୍ତ ହେଲେ ଗୌତମକିଶୋରୀ
କଙ୍କରିଳ ଶିଳାପୃଷ୍ଠେ ଅବାଙ୍ମୁଖ ମୂର୍ଚ୍ଛିତ ବଲ୍ଲରୀ ।।୪୫।।

ବୃନ୍ଦାବତୀ ଅଭିଶାପେ ସତେ ଅବା ବିଷ୍ଣୁ ଶିଳାତନୁ
କାନ୍ଦିଲେ ବାଳୀସୁଗ୍ରୀବ ଅଶ୍ରୁସ୍ନାତା ଅଞ୍ଜନା ସୁତନୁ
ଥରିଲେ ଆଦିତ୍ୟବୃନ୍ଦେ ଶିହରିଲେ ଆକାଶ ଅବନୀ
ନ ପଡ଼ିଲା ବର୍ଷାବାରି ଜନପଦେ ହେଲା ଶସ୍ୟହାନି ।।୪୬।।

ଶ୍ୟାମତନୁ ଦୂର୍ବାଦଳ ଲୁପ୍ତହେଲା ପାଷାଣକଙ୍କରେ
ନିର୍ଝରିଣୀ ଶୁଷ୍କହେଲା ରବିଙ୍କର ପ୍ରଚଣ୍ଡ ଜାଳରେ
ଆଶ୍ରମର ବୃକ୍ଷଲତା ପଶୁପକ୍ଷୀ ସର୍ବେ ହେଲେ ଘାରି
ଖୋଜୁଛନ୍ତି କାହିଁଗଲେ ମାତୃକଳ୍ପା ଅହଲ୍ୟା ସୁନ୍ଦରୀ ।।୪୭।।

ଅଞ୍ଜନାର ମନେ ଭୀତି ମାତାଙ୍କର ଅଭିଶାପ ଗୁଣି
ପ୍ରତିକାର ଖୋଜେ ବାଳା କିପରି ସେ ନ ହେବ ଜନନୀ
ନ ଚାହିଁବ ପୁରୁଷରେ ତପସ୍ୟାରେ ଲଭିବ ନିର୍ବାଣ
ସମାଧି ରଚିବ ସତୀ ମନେ ତାର ଦୃଢ଼ ଅଭିମାନ ।।୪୮।।

## ତିନି

ମୁଦ୍ରିତନୟନା ତନ୍ୱୀ ସମାଧିରେ ନିଶ୍ଚଳ ଶରୀର
ନିବାତ ନିଷ୍କମ୍ପ ହୃଦେ ଧ୍ୟାନରତା ପବନ ଆହାର
କାମନାରହିତ ତନୁ ହୃଦେ ତା'ର ଭକ୍ତିର ବିଳାସ
ବହୁକାଳ ବିତିଗଲା ସତେ ଅବା ନିର୍ବାଣ ପ୍ରଦୋଷ ।।୪୯।।

ସେଦିନ ବାସନ୍ତୀସଂଧ୍ୟା ଅଞ୍ଜନାର ଆଶ୍ରମପ୍ରାନ୍ତରେ
ଉଲ୍ଲସିତ ତରୁଲତା ସମୀରଣ ଲୁଚୁକାଳି ଖେଳେ
ଚୈତ୍ରକରଜନୀ ସତେ ଜ୍ୟୋସ୍ନାର ଏ ଅପୂର୍ବ ଜୁଆର
ପୁଷ୍ପରାଗ ବହିଆଣେ ସୁନାଗର ମଳୟ ସମୀର ।।୫୦।।

ଅଞ୍ଜନାରେ ସ୍ପର୍ଶକରେ ବିକିରିତ ପୁଷ୍ପର ସୁରଭି
ମଳୟ ସଙ୍ଗୀତ ଗାଏ ସତେ ଅବା ଅପୂର୍ବ ପୂରବୀ
ପୁଷ୍ପରାଗେ ରଜଃସିକ୍ତ ଅଞ୍ଜନାର ଅନିନ୍ଦ୍ୟତନିମା
ବୁଲନ୍ତି ମଧୁପଶ୍ରେଣୀ ସତେ ଅବା ପୁଷ୍ପରପ୍ରତିମା ।।୫୧।।

ବାସନ୍ତୀ ଆସରେ ରଙ୍ଗେ ବୁଲୁଛନ୍ତି ବନେ ପଶୁପତି
ବଲ୍ଲରୀତଭୁଜପାଶେ ଶୋଭୁଥାନ୍ତି ବାମାଙ୍ଗେ ପାର୍ବତୀ
କସ୍ତୁରିକାଚନ୍ଦନରେ ଦେବୀଙ୍କର ଅଙ୍ଗ ବିଲେପିତ
ଶ୍ମଶାନ ଭସ୍ମାଙ୍ଗରାଗେ ଶୁଭ୍ରତନୁ ଶିବ ବିମଣ୍ଡିତ ।।୫୨।।

ସୋହାଗେ କହିଲେ ଦେବୀ, ଆଜିର ଏ ପାର୍ବଣ ଶର୍ବରୀ
ମନେ ମୋ ଅବ୍ୟକ୍ତ ଚିନ୍ତା, ଅତନୁରେ ତନୁ ହୁଏ ଘାରି
ତୁମେ କି ନ ଜାଣ ପ୍ରିୟ ନାରୀହୃଦରହସ୍ୟବେଦନା
ନିର୍ବୃତ୍ତିର ମହାଯୋଗେ କାହିଁ ମୋତେ କର ବିଡ଼ମ୍ବନା।।୫୩।।

କୈଳାସେ ସାଧିବ ତପ ନିର୍ବୃତ୍ତିର ଅତଳସାଗରେ
ଝୁରୁଥିବି ଅଭାଗିନୀ ତୁମ ପ୍ରେମପ୍ରବୃତ୍ତି କୁଆରେ
ସେଦିନ ମୁଁ ଫେରିଗଲି ଭସ୍ମୀଭୂତ କରିଲ ମଦନ
କି ପାଇଲ ଦେବଦେବ ମୋତେ କିପାଁ କଲ ହୀନିମାନ।।୫୪।।

ସ୍ମିତହାସ୍ୟେ ପଶୁପତି କୋଳେ ଧରି ଶୈଳାଧିତନୟା
ଭାଙ୍ଗିଛ ମୋ ମହାଯୋଗ ତପସ୍ୱିନୀ ତୁମେ ମହାମାୟା
ମିଛକଥା କନ୍ଦର୍ପକୁ ନ ପାରିବେ କେହି ଜୟ କରି
ଭସ୍ମକଲି ଅଭିମାନେ, ଦମ୍ଭ ମୋର ଭାଙ୍ଗିଛ କିଶୋରୀ ।।୫୫।।

ପୁଷ୍ପଧନ୍ୱା ଅତନୁରେ କେବେହେଲେ ନ ବହିବି ରୋଷ
ସୁମୁଖୀ ରତିରେ କେବେ ନ ଦେବି ଗୋ ବିଧବାର କ୍ଲେଶ
ଶରୀର ମୁଁ ଜୟକଲି, ନ ପାରିଲି ଦୂରକରି ମନୁ
ଅଶରୀରୀ ତା'ର ଗତି, ସେହିଦିନୁ ସୁତନୁ ଅତନୁ ।।୫୬।।

ଚେତନାର ବାଲିବନ୍ଧ ନ ମାନେ ଗୋ ଅଚେତନ ଊର୍ମି
ମନର ଅତଳ ଢେଉ, ସମାଧି ମୋ ଲୁପ୍ତହେଲା ଭୂମି
ପ୍ରକୃତିର ସମ୍ମୋହନ, ତୁମେ ସତ୍ୟ ପୁରାଣୀ ପ୍ରବୃତ୍ତି
ମାନିଛି ଗୋ ପରାଜୟ, ସେହିଦିନୁ ମୁହିଁ ଉମାପତି ।।୫୭।।

ଅର୍ଦ୍ଧନାରୀଶ୍ୱର ମୁହିଁ ତୁମ ପ୍ରେମେ ହୋଇଛି ପାଗଳ
ଅତନୁ ଅପରାଜେୟ, ତା'ର ପାଶେ ବିନୀତ ଶଙ୍କର
ବୃଥା କିପାଁ ଅଭିମାନେ କରୁଅଛ ମୋତେ ସନ୍ତାପିତ
ତୁମେ କି ନ ଜାଣ ସଖୀ, ତପସ୍ୟାରେ ମୁହିଁ ପରା କ୍ରୀତ ।।୫୮।।

ନିଧୁବନେ ଉଚ୍ଛ୍ୱସିତ ଯୁଗନଦ୍ଧ ଉମାମହେଶ୍ୱର
ଦେବଗଣେ ଦେଖୁଥାନ୍ତି, ନାଚୁଥାନ୍ତି ଅପ୍ସରାକିନ୍ନର
ବିଚରିଲେ ବନେ ବନେ ରତିରଙ୍ଗେ ନାନାବେଶ ଧରି
ଜୀବେ ଜୀବେ ସଞ୍ଚରିଲେ କୁତୂହଳେ ଶଙ୍କର ଶଙ୍କରୀ ।।୫୯।।

ପଶୁପତି ପଶୁମେଳେ ନାନାରୂପେ ରଚିଲେ ତାଣ୍ଡବ
ଲାସ୍ୟେହାସ୍ୟେ ଯୋଗମାୟା ଅନୁରୂପେ ପ୍ରଣୟ ବୈଭବ
ଆକାଶେ ହସିଲେ ଚନ୍ଦ୍ର ନୃତ୍ୟକଲେ ଚାରୁଦିଗଙ୍ଗନା
ଚୈତ୍ରକ ସମୀର ଆଜି ଅଞ୍ଜନାରେ ହେଲେ ଆନମନା ।।୬୦।।

ପୁଷ୍ପବତୀ ଅଞ୍ଜନାର ଦେହେ ଆଜି ପୁଷ୍ପରକୋରକ
ଶିହରିତ ଲୋମକୂପେ ସ୍ୱେଦାମ୍ବୁର ଅପୂର୍ବ ପୁଲକ
ନ ଖୋଲିଲା ନେତ୍ର ଧନୀ ଅଚଞ୍ଚଳ ଅଞ୍ଜନାର ତନ
ପ୍ରେମର ଅତଳ ଢେଉ ଆନ୍ଦୋଳିତ କିଶୋରୀର ମନ ।।୬୧।।

ଏହିକାଳେ ପଶୁପତି କୁତୂହଳେ ମର୍କଟଶରୀର
ମର୍କଟୀରୂପରେ ସତୀ ଯୁଗନଦ୍ଧେ କରିଲେ ବିହାର

ପର୍ବତଶୃଙ୍ଗରେ ଦେବ କପିଞ୍ଜଳ ଅପୂର୍ବ ମୂରତି
ବାନରୀ ରୂପରେ ଦେବୀ ଯାଚିଦେଲେ ଅମିୟ ସୁରତି ।।୬୨।।

ନିସ୍ୟନ୍ଦିତ ତେଜଃଶକ୍ତି ମୁଗ୍ଧହେଲେ ପୃଥିବୀ ଆକାଶ
ସ୍ତୁତିକଲେ ଦେବାଙ୍ଗନା ଦେଖି ତାଙ୍କ ଅପୂର୍ବ ବିଳାସ
ସଲଜ୍ଜା ପର୍ବତକନ୍ୟା ବ୍ରୀଡ଼ାଙ୍କିତ ମୁଦ୍ରିତ ନୟନା
ରତିକ୍ଳାନ୍ତା ସିକ୍ତ ତନୁ ପୂର୍ଣ୍ଣହେଲା ଅବ୍ୟକ୍ତ ବାସନା ।।୬୩।।

ସମୀରଣ ସେବାକରେ ଅଙ୍ଗେ ବହି ପୁଷ୍ପର ପରାଗ
ହିଲ୍ଲୋଳିତ ତେଜଃଶକ୍ତି ଉଚ୍ଛ୍ୱସିତ ପ୍ରେମ ଅନୁରାଗ
ସମୀର ହୋଇଲେ ସିକ୍ତ ଶିବତେଜେ ଅମୃତ ମଧୁର
ପ୍ରକୃତି ପୁରୁଷପ୍ରେମେ ନିଜ ପ୍ରେମ ହୋଇଲା ଉଦ୍‌ବେଳ।।୬୪।।

ସ୍ପର୍ଶକଲେ ଅଞ୍ଜନାରେ ହୃଦେ ତା'ର ପ୍ରଣୟର ବନ୍ୟା
ଗଣ୍ଡଦେଶେ ଆଙ୍କିଦେଲେ ନର୍ମସ୍ପର୍ଶ ଶୀତଳରସନା
ଉତ୍ତରୀୟ ଉଡ଼ିଗଲା ଛିଡ଼ିଗଲା ବଲ୍କଳର ଗ୍ରନ୍ଥି
ଅଞ୍ଜନା ଉରଜେ ଆଜି ହିଲ୍ଲୋଳିତ ପବନର ଗତି ।।୬୫।।

ଲୋମକୂପେ ବିସରିଲା ରନ୍ଧ୍ରେ ରନ୍ଧ୍ରେ ଭରିଲା ସ୍ପନ୍ଦନ
ନାଭିଦେଶ ସ୍ପର୍ଶକଲେ ରେତସିକ୍ତ ହରିଣବାହନ
ଆଙ୍କିଦେଲେ ଚନ୍ଦ୍ରକଳା ସ୍ପର୍ଶକ୍ଷେମ ବିଦଗ୍ଧନାୟକ
ନିଷିକ୍ତା ଗୌତମକନ୍ୟା ମନମଧ୍ୟେ ଅପୂର୍ବ ପୁଲକ ।।୬୬।।

ପାଦଠାରୁ କେଶଯାଏ ଥରିଉଠେ ଅଞ୍ଜନାସୁନ୍ଦରୀ
ଅବ୍ୟକ୍ତ ଉଲ୍ଲାସେ ନାଚେ ତା ହୃଦର ସଂଗୋପିତ ନାରୀ
ମନେ ବହି ଅଭିମାନ ନ କରଇ ପୁରୁଷ ଦର୍ଶନ
ଶୀତଳମରୁତସ୍ପର୍ଶେ ଆନନ୍ଦିତ ଅଞ୍ଜନାର ମନ ।।୬୭।।

ମୁଦ୍ରିତନୟନା ତନ୍ୱୀ ପବନରେ କଲେ ଆଲିଙ୍ଗନ
ଅନୁକୂଳେ ଆଙ୍କିଦେଲେ ଓଷ୍ଠପ୍ରାନ୍ତେ ସହସ୍ର ଚୁମ୍ବନ
ବିବୃତରସନା ଧନୀ ପୂରକରେ ଶୋଷିଲା ଅନିଳ
ହୃଦେ ତା'ର ସଂଗୋପିଲା ସତେଅବା କଳ୍ପତରୁ ଫଳ।।୬୮।।

ପ୍ରାଣାୟାମେ ଯଶସ୍ୱିନୀ ଅନ୍ତରରେ ଅନାହତ ସ୍ୱନ
ଗୋଲୋକର ନିତ୍ୟଧାମେ ସତେ ଅବା ବଂଶୀର ନିଃସ୍ୱନ
କର୍ଣ୍ଣେ ତାର କୁହରିତ ପ୍ରେମଗୀତି ଅସ୍ଫୁଟ ସଙ୍ଗୀତ
ଅନ୍ତରର ବୃନ୍ଦାବନ କୋଟିଚନ୍ଦ୍ରେ ସତେ ଜ୍ୟୋସ୍ନାୟିତ ।।୬୯।।

ଅବ୍ୟକ୍ତ ଲୀଳାରେ ସତୀ ସ୍ୱେଦାମ୍ବୁରେ ହେଲେ ଜର୍ଜରିତ
ଅବ୍ୟକ୍ତ କ୍ଳାନ୍ତିରେ ବାଳା ହିଲ୍ଲୋଳରେ ହୋଇଲେ ତନ୍ଦ୍ରିତ
ସୁଶୀତଳ ସମୀରଣ କୋଳେ ଧରି ଅଞ୍ଜନାସୁନ୍ଦରୀ
ପଲ୍ଲବରେ ବିଞ୍ଚିଦେଲେ ସେହି ପରା ରତିକ୍ଳାନ୍ତା ନାରୀ ! ।।୭୦।।

ଅଞ୍ଜନାର ହୃଦୟରେ ଦୋହଦର ସୁରମ୍ୟ ବ୍ୟଞ୍ଜନା
ମନମଧ୍ୟେ ଚିନ୍ତାକରେ ଅହଲ୍ୟାର ଶାପ ବିଡ଼ମ୍ବନା
ନିଜ ହୃଦେ ଖୋଜିବୁଲେ ନାରୀତ୍ୱର ଅପୂର୍ବ ଅଭୀପ୍ସା
ମୁଦ୍ରିତନୟନା ବାଳା ସତେ ଅବା ସ୍ତିମିତ ତପସ୍ୟା ।।୭୧।।

ପବନର ମନ୍ଦ୍ରସ୍ୱନେ ଶିହରିତ ଅଞ୍ଜନାର ଛାତି
ନ ଖୋଲେ ନୟନ ସତୀ ଦେହେ ତାର ତପସ୍ୟା ବିଛିତି
ଫିଙ୍ଗିଦିଏ ମନୁ ତା'ର ଯେତେ ଯେତେ ପ୍ରବୃତ୍ତିର ଛନ୍ଦ
ନ ଚାହିଁବ ପୁରୁଷରେ ମନମଧ୍ୟେ ମର୍ଯ୍ୟାଦାର ଦ୍ୱନ୍ଦ୍ୱ ।।୭୨।।

ଅବିରତେ ସେବେ ବାୟୁ, ଅଞ୍ଜନାର ତନୁ ପୁଲକିତ
ଶାଶ୍ୱତମଳୟାନିଳ ଶୋଭାପାଏ ସୁଚିରବସନ୍ତ

ଦିନଗଲା ମାସଗଲା ଅଞ୍ଜନାର ତନୁ ହେଲା ଘାରି
ସୃଷ୍ଟି ଖୋଜେ ମହାଶକ୍ତି ତପସ୍ୱିନୀ ହୃଦୟ ବିଦାରି ।।୭୩।।

ବୁଝି ନ ବୁଝିଲା ବାଳା ସୃଷ୍ଟିର ଏ ଅପୂର୍ବ ରହସ୍ୟ
ଅହଲ୍ୟାର ଅଭିଶାପ ହୃଦେ ବହି ମନେ ଆଣେ କ୍ଲେଶ
ଯଥାକାଳେ ପ୍ରସବିଲା ହନୁମାନ୍ ମରୁତସନ୍ତାନ
ଚକ୍ଷୁଖୋଲି ଦେଖେ ବାଳା ସତେ ଅବା ତପସ୍ୱିନୀ ଧନ।।୭୪।।

ଏକାଳେ ପବନଦେବ ଦେଖାଦେଲେ ହରିଣବାହନେ
ବକ୍ଷେ ଶୋଭେ ପୁଷ୍ପମାଳା ମଧୁଯୁତ ଭ୍ରମର ଗୁଞ୍ଜନେ
ପୁଷ୍ପରେଣୁ ଉଡ଼ିବୁଲେ ମଳୟର କୋମଳ ସ୍ପରଶ
ଚକିତ ହୋଇଲା ତନ୍ୱୀ, କିପାଁ ତୁମେ ଦେଲ ମୋତେ କ୍ଲେଶ ।।୭୫।।

ସଂଭ୍ରମେ କହିଲେ ଦେବ ନାରୀ ତୁମେ ଦୁର୍ବାର ବାସନା
ପ୍ରବୃତ୍ତିର ପ୍ରତିକୂଳେ ଭ୍ରମିବାଟା ଅଭିମାନ ସିନା
ସ୍ପର୍ଶର ତନ୍ମାତ୍ର ବହି ଦେଖିଲି ମୁଁ ତୁମ୍ଭଙ୍କୁ ସୁଗାତ୍ରୀ
ଶରୀରରେ ତପଃକ୍ଲେଶ ମନମଧ୍ୟେ ପୁରାଣୀ ପ୍ରବୃତ୍ତି ।।୭୬।।

ପୁରୁଷର ଭଙ୍ଗିମାରେ ତୁମକୁ ଗୋ ଦେଲି ମୁଁ ଆଶ୍ଳେଷ
ଦ୍ରବିଗଲା ତୁମ ହୃଦ ତୁମେ ନାରୀ ପ୍ରକୃତି ବିଳାସ
ସଚେତନେ ତୁମେ ଗୋରୀ ତପସ୍ୟାର ନିର୍ବାଣ ଦ୍ୟୋତନା
ଅଚେତନେ ତୁମେ ନାରୀ ସତ୍ୟାଶ୍ରୟୀ ଅଚିତିଚେତନା ।।୭୭।।

ହୃଦେ ବହି ରୋଷ ତୁମେ କରୁଥିଲ ପ୍ରକୃତି ଲଙ୍ଘନ
ପୁରୁଷକୁ ଦୂରକରି ମନ ମଧ୍ୟେ ମିଥ୍ୟା ଅଭିମାନ
ଅନ୍ତରେ ଅନ୍ତରେ ପ୍ରିୟେ ଗୁଞ୍ଜରିତ ନାରୀର ସ୍ପନ୍ଦନ
ଅଚେତନେ ଇଚ୍ଛାକଲ ପୁରୁଷର ପ୍ରେମ ଆଲିଙ୍ଗନ ।।୭୮।।

ସନ୍ତର୍ପିତ କଲ ମୋରେ ପ୍ରାଣସିକ୍ତ ପୁରୁଷସ୍ୱଭାବ
ନିର୍ବାଣ ନିର୍ମୋକ ଖୋଲି ଦେଖିଲି ମୁଁ ନାରୀର ବୈଭବ
ତୁମେ କି ନ ଜାଣ ସଖୀ ପାଞ୍ଚମନ ପଚିଶ ପ୍ରକୃତି
ମନୋରାଜ୍ୟେ ଶୋଭାପାଏ ରତିପତି ଅଜେୟ ପୀରତି ।।୭୯।।

ମହାସତୀ ଅଭିଶାପେ ଅହଙ୍କାରୀ ତୁମ ସ୍ଥୂଳତନୁ
ସୂକ୍ଷ୍ମାତିସୂକ୍ଷ୍ମ ହୃଦୟେ ଅଶାନ୍ତ ଗୋ ରିରଂସୁ ଅତନୁ
ତୁମେ ଗୋ ଖୋଜିଲ ମୋରେ ଚେତନାର ଅତଳ ଗହ୍ୱରେ
ପୁରୁଷକୁ ତ୍ୟାଗକରି ପ୍ରକୃତି କି କେବେ ରହିପାରେ ।।୮୦।।

ଶିବତେଜେ ବଳୀୟାନ୍ ମନେ ବହି ଅବ୍ୟକ୍ତ ବାସନା
ତନୁରନ୍ଧ୍ରେ ପ୍ରସରିଲା ପ୍ରଲୁବ୍ଧ ମୋ ପୁରୁଷଚେତନା
ଅନୁରାଗେ ଆକର୍ଷିଲ ଚିତ୍ତ ମୋର ହୋଇଲା ଉଦ୍ଧଳ
ପ୍ରକୃତିର ସମ୍ମୋହନେ ତୁମ ପ୍ରେମେ ହେଲି ମୁଁ ପାଗଳ ।।୮୧।।

ସତ୍ୟର ନିୟମ ପାଶେ ବନ୍ଧା ଆମେ ପଞ୍ଚ ମହାଭୂତ
ସଂଗୋପିତ ନାରୀହୃଦ ମୋର ଆଗେ ହୋଇଲା ସୁବ୍ୟକ୍ତ
ଯେତେ ତୁମେ ଲୁଚାଇଲେ ଆମେ ଜାଣୁ ପ୍ରାଣୀର ବାସନା
ସତ୍ୟ ଆମେ, ଋତ ଆମେ, ସ୍ପର୍ଶ କରୁ ଅତଳ ଚେତନା।।୮୨।।

ମାତୃତ୍ୱକୁ ନିଅ ବରି ସୁଖେ ଦେଖ ସନ୍ତାନର ମୁଖ
ମହାବୀର୍ଯ୍ୟ ମହାତନୁ ଦୀପ୍ତିମୟ ଅମୃତ ମୟୂଖ
ତୁମେ ସତୀ ଭାଗ୍ୟବତୀ ପୁତ୍ର ତୁମ ଅନନ୍ତବିକ୍ରମ
ମୃତ୍ୟୁଞ୍ଜୟ ପ୍ରସାଦରେ ଅମୃତ ଏ ନିତ୍ୟ ଅରିନ୍ଦମ ।।୮୩।।

ଉତ୍ତରିବେ ଭବେ ବିଷ୍ଣୁ ତେଜି ହେଳେ କ୍ଷୀରାବ୍ଧିତରଙ୍ଗ
ତୁମ ପୁତ୍ର ହେବ ତାଙ୍କ ମହାକାର୍ଯ୍ୟେ ସାଧନର ଅଙ୍ଗ

ଅନନ୍ତଶକ୍ତିସଂପନ୍ନ ମହାବଳୀ ଅଜେୟ ଶକତି
ମୃତ୍ୟୁଞ୍ଜୟ ତେଜେ ଜନ୍ମ କୃତବିଦ୍ୟ ଅକ୍ଷୟ ମାରୁତି ।।୮୪।।

ଚାହିଁଲା ସନ୍ତାନେ ହେରି ମହାସତୀ ଗୌତମତନୟା
ମାତୃତ୍ୱର ନିସ୍ୟନ୍ଦନେ ପୁଲକିତ ଅଞ୍ଜନାର କାୟା
ଅହଲ୍ୟାର ଅଭିଶାପ ସତେ ଆଜି ବରେ ରୂପାୟିତ
ଘୁଞ୍ଚିଗଲା ଅନ୍ଧକାର ପ୍ରୀତତନୁ ସାର୍ଥକ ନାରୀତ୍ୱ ।।୮୫।।

ମାତାର ପାଷାଣୀ ମୂର୍ତ୍ତି ଅଞ୍ଜନାର ନେତ୍ରୁ ବହେ ନୀର
ନିବେଦିଲା ଗୌତମରେ ଅହଲ୍ୟାର କିବା ପ୍ରତିକାର
ମୁଦ୍ରିତ ନୟନ ମୁନି ପ୍ରଶାନ୍ତିର ବିମଳ ନିଳୟ
''ବିଷ୍ଣୁଙ୍କର ପଦସ୍ପର୍ଶେ ଅହଲ୍ୟାର ଶାପ ହେବ କ୍ଷୟ'' ।।୮୬।।

କଙ୍କରିଳ ପାଷାଣରେ ଝରିବ ଗୋ ନିର୍ଝର ସଲିଳ
ବୃକ୍ଷଲତା ପରିପୂର୍ଣ୍ଣ ଚଉଦିଗେ ଶ୍ୟାମଦୂର୍ବାଦଳ
ଅହଲ୍ୟା ପାଇବେ ମୁକ୍ତି ମହାସତୀ ମହାପୁଣ୍ୟବତୀ
ବିଷ୍ଣୁଙ୍କର ପଦସ୍ପର୍ଶେ ରଖିଯିବେ ଅକ୍ଷୟକୀରତି ।।୮୭।।

ଯେଉଁ ପଦ ଦେଖିବାକୁ ବ୍ରହ୍ମା ଶିବ କରୁଥାନ୍ତି ଧ୍ୟାନ
ମୁନିଋଷି ମହାତପେ ବିତାଇଲେ ସମସ୍ତ ଜୀବନ
ଅଗାଧ ତପସ୍ୟାଜଳେ ଯାହା ମୁହିଁ ନ ପାଇଲି ଖୋଜି
ଅହଲ୍ୟା ପାଷାଣୀ ତନୁ ପାଇବ ଗୋ ଅବହେଳେ ଆଜି ।।୮୮।।

ଆସିବେ ଶ୍ରୀରାମଚନ୍ଦ୍ର ଶ୍ୟାମତନୁ କୌଶଲ୍ୟାନନ୍ଦନ
ଭୂଭାରହରଣେ ବିଷ୍ଣୁ ଜନ୍ମନେବେ ତେଜି ନିଜ ଧାମ
ତାଙ୍କ ପଦକ୍ରାନ୍ତେ ସତୀ ହେଲେ ତେଜି ପାଷାଣର ତନୁ
ଅପୂର୍ବ ଲାବଣ୍ୟେ ଧନୀ ଦେଖାଦେବେ ଅହଲ୍ୟାସୁତନୁ।।୮୯।।

## ଚାରି

ସେ ଏକ ବିବିକ୍ତ ଉଷା ଗୌତମଙ୍କ ଆଶ୍ରମପ୍ରାନ୍ତରେ
ମହାତପା ଧ୍ୟାନମଗ୍ନ ତପସ୍ୟାର ଅତଳସାଗରେ
କଙ୍କରିଳ ଶୈଳପ୍ରାନ୍ତେ ଲୁକ୍କାୟିତ ଅହଲ୍ୟା ଶରୀର
ସାଧନାର ପରାକାଷ୍ଠା, ଶିଳାତନୁ, ନିଶ୍ଚଳ ସୁସ୍ଥିର ।।୯୦।।

ଦ୍ୱିଧାହୀନ ଦ୍ୱନ୍ଦ୍ୱହୀନ ସତେ ଅବା ମୃତ୍ୟୁର ପ୍ରଲେପ
ଅହଲ୍ୟାର ଭବ୍ୟମୂର୍ତ୍ତି ସ୍ମରଣୀୟ ଶୋଭାରୂପକଳ୍ପ
ଯାଇଛି ଅହଲ୍ୟା ତନ୍ୱୀ ଦଗ୍ଧ ଆଜି ଶ୍ୟାମଳ ବନାନୀ
ଆକାଶେ ଚାହିଁଛି ରିକ୍ତା ମରୁହୃଦେ ଉତ୍ତାନଧରଣୀ ।।୯୧।।

ମହାତପା ବିଶ୍ୱାମିତ୍ର ସଙ୍ଗେ ଧରି କୌଶଲ୍ୟା ନନ୍ଦନ
ସଲକ୍ଷ୍ମଣ ମିଥିଳାକୁ ଥିଲା ତାଙ୍କ ଶୁଭ ଆଗମନ
ବିଦେହର ପଥପ୍ରାନ୍ତେ କଙ୍କରିଳ ବିସ୍ତୀର୍ଣ୍ଣ ପ୍ରାନ୍ତର
କୌଶିକ ନେତ୍ରରୁ ବହେ କରୁଣାର ଅଶ୍ରୁ ଦୁଇଧାର ।।୯୨।।

ଜିଜ୍ଞାସିଲେ ରାଜପୁତ୍ର କେଉଁ ସ୍ଥାନ ଏ ମରୁପ୍ରାନ୍ତର
ପାଷାଣର ରିକ୍ତହୃଦେ ତରୁଲତା ଶୂନ୍ୟ କଙ୍କରିଳ
ପ୍ରଚଣ୍ଡ କିରଣଜାଳ ନାହିଁ ଏଥି କାକଳି ନିଃସ୍ୱନ
ଅନ୍ତରେ ମୋ ଶୁଭୁଅଛି କାହାର ଏ କରୁଣ କ୍ରନ୍ଦନ ।।୯୩।।

ସ୍ପନ୍ଦିତ ଦକ୍ଷିଣଭୁଜ ମନେ ମୋର କାରୁଣ୍ୟର ସ୍ରୋତ
ଅବ୍ୟକ୍ତ ଚେତନା ମୋର ଏଥି କିପାଁ ହୁଏ ଦ୍ରବୀଭୂତ
ନେତ୍ରେ ମୋର ଅଶ୍ରୁ ଜାଗେ ଶୁଣେ କାର କରୁଣ ଆହ୍ୱାନ
ମୂର୍ଚ୍ଛିତା ନାରୀର ରୂପ ବିସ୍ମୃତିରେ ହୁଏ ଭାସମାନ ।।୯୪।।

ସସ୍ମିତେ କହିଲେ ଋଷି କାରୁଣିକ ହେ ରଘୁନନ୍ଦନ
ପଦକ୍ରାନ୍ତେ ଦେଖିଆସ କଙ୍କରିଳ ଏ ଶୂନ୍ୟ ପାଷାଣ
ତୁମ ପଦରେଣୁ ପଡୁ ମରୁମୟ ଶିଳା ଆସ୍ତରଣେ
ତୁମର ମହିମା ବ୍ୟାପୁ ଚଉଦିଗେ ଏ ତିନିଭୁବନେ ।।୯୫।।



ପ୍ରଣତ ଅହଲ୍ୟାକେଶ ସ୍ପର୍ଶକଲେ ଶ୍ରୀରାମ ଚରଣ
ନିସ୍ୟନ୍ଦିତ ମଧୁରେଖା ପଦ୍ମକୋଷେ ଭ୍ରମରଦୋଳନ
ଚାହିଁଲେ ଅମରେ ମୁଗ୍ଧେ ଚାହିଁଥାନ୍ତି କୌଶିକ ଲକ୍ଷ୍ମଣ
ବିସ୍ମିତ ଶ୍ରୀରାମଚନ୍ଦ୍ର ହୃଦ ତାଙ୍କ ରହସ୍ୟେ ଆଚ୍ଛନ୍ନ

ଛନ୍ଦେ ଛନ୍ଦେ ପଦକ୍ରାନ୍ତି ସଞ୍ଚାରିଲେ କୌଶଲ୍ୟାନନ୍ଦନ
ମନ୍ଦେ ମନ୍ଦେ ବହିଆସେ ସୁରଭିତ ମଳୟ ପବନ
ରନ୍ଧ୍ରେ ରନ୍ଧ୍ରେ ଶିହରିଲା ମରୁହୃଦ ପାଷାଣ ମୂରତି
ମୁଦେ ମୁଦେ ପ୍ରସରିଲା ଦୂର୍ବାଦଳ ଶ୍ୟାମଳ ବିଛିତି ॥୯୬॥

ପାଷାଣର ରୁକ୍ଷଭୂଇଁ ତେଜି ଆଜି ତପସ୍ୟାର ରୂପ
ଶ୍ୟାମବନେ ଉଭାହେଲା ପୁଷ୍ପଫଳେ ସମୃଦ୍ଧ ବିଟପ
ବହିଲା ନିର୍ଝର ଝର ଅନ୍ତଃଫଲ୍ଗୁ ହେଲା କି ସୁବ୍ୟକ୍ତ
ତପସ୍ୱିନୀ ପ୍ରାଣେ ଅବା ସତେ ଆଜି ପ୍ରେମ ବଲ୍ଲରୀତ ॥୯୭॥

ନିଷ୍ପାପସୌନ୍ଦର୍ଯ୍ୟଶୋଭୀ ଦେଖାଦେଲେ ଅହଲ୍ୟାସୁନ୍ଦରୀ
କୋରକିତ ହସ୍ତପଦ୍ମ ଧ୍ୟାନ-ମୁଦ୍ରା ଅନିନ୍ଦ୍ୟ କିଶୋରୀ
ରସାଣିତ ତନୁଲତା ଅଙ୍ଗେ ଅଙ୍ଗେ ପୁଷ୍ପର ତନିମା
ପାଷାଣର ବକ୍ଷଭେଦି ଫୁଟିଉଠେ ପଦ୍ମର ସୁଷମା ॥୯୮॥

ପ୍ରଣତ ଅହଲ୍ୟାକେଶ ସ୍ପର୍ଶକଲେ ଶ୍ରୀରାମ ଚରଣ
ନିସ୍ୟନ୍ଦିତ ମଧୁରେଖା ପଦ୍ମକୋଷେ ଭ୍ରମରଦୋଳନ
ଚାହିଁଲେ ଅମରେ ମୁଗ୍ଧେ ଚାହିଁଥାନ୍ତି କୌଶିକ ଲକ୍ଷ୍ମଣ
ବିସ୍ମିତ ଶ୍ରୀରାମଚନ୍ଦ୍ର ହୃଦ ତାଙ୍କ ରହସ୍ୟେ ଆଛନ୍ନ ॥୯୯॥

ପ୍ରବେଶିଲେ ମହାତପା ଧୀର ଶାନ୍ତ ଗଉତମ ମୁନି
ବରିନେଲେ ଅହଲ୍ୟାରେ ଧନ୍ୟ ତୁମେ ସତୀ ତପସ୍ୱିନୀ
ନିଜର ରହସ୍ୟ ରାମ ନ ପାରିଲେ ନିଜେ କିଛି ଜାଣି
ତପସ୍ୟାର ଧ୍ୟାନନେତ୍ରେ ଚାହିଁଥାନ୍ତି ଗୌତମଘରଣୀ ॥୧୦୦॥

ସେ ଏକ ବିବିକ୍ତ ଉଷା ଗୌତମଙ୍କ ଆଶ୍ରମପ୍ରାନ୍ତରେ
ମହାତପା ଧ୍ୟାନମଗ୍ନ ତପସ୍ୟାର ଅତଳସାଗରେ
ବହିଯାଏ କାଳସ୍ରୋତ କହିଯାଏ ଶ୍ରୀରାମଙ୍କ କଥା
ତପସ୍ୱିନୀ ଅହଲ୍ୟାର ମୃତ୍ୟୁଞ୍ଜୟୀ ଅମିୟ ବାରତା ॥୧୦୧॥

---



'ଅହଲ୍ୟା' – ଏହି ନାମଟି ଶାଶ୍ୱତୀ କନ୍ୟାର ରୂପକଳ୍ପ ଭାବେ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ । ସେ ପ୍ରାତଃସ୍ମରଣୀୟା । ଅନ୍ୟ ଦୃଷ୍ଟିରୁ ନାରୀ-ହୃଦୟର ସଂଗୋପିତ ବ୍ୟଥାର କରୁଣ ଛବି । ବାଲ୍ମୀକି ରାମାୟଣରେ ଏହି ଚରିତ୍ରଟି ବିଶେଷଭାବେ ବର୍ଣ୍ଣିତ ହୋଇଛି । ଇନ୍ଦ୍ରଙ୍କ ପ୍ରବଞ୍ଚନା ଓ ଗୌତମଙ୍କ ଅଭିଶାପ ଅହଲ୍ୟାଙ୍କ ଜୀବନକୁ ପଥର ତଳେ ଚାପିଦେଇଛି । ସ୍ୱକୀୟ ତପଃସିଦ୍ଧିରେ ସେ କିନ୍ତୁ ଅଧିକ ଉଜ୍ଜ୍ୱଳ ହୋଇଛନ୍ତି । ନିଷ୍ଠା ଓ ସହିଷ୍ଣୁତା ତାଙ୍କୁ ମହୀୟସୀ କରିପାରିଛି ।

ଅହଲ୍ୟାଙ୍କ ଜୀବନର ଘାତ-ପ୍ରତିଘାତକୁ ବରିଷ୍ଠ ସଂସ୍କୃତ-ବିଦ୍ୱାନ ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀ ପ୍ରଶସ୍ତ ମୁଖବନ୍ଧ ସହିତ ଶତକ କବିତା ପଂକ୍ତିରେ ପ୍ରକାଶ କରିଛନ୍ତି । ଋଷି ଗୌତମ ତପସ୍ୟାରେ ନିମଜ୍ଜିତ; ଋଷିପତ୍ନୀ ଅହଲ୍ୟା ଥିଲେ ଅସାମାନ୍ୟା ସୁନ୍ଦରୀ ଓ ଆଶ୍ରମରେ ପତିଙ୍କ ଅନୁଚିନ୍ତାରେ ବିରହିଣୀ । ଋତୁ ପରେ ଋତୁ ଧରାକୁ ବିମଣ୍ଡିତ କରୁଛି କିନ୍ତୁ ଋଷି ଫେରୁ ନାହାନ୍ତି । ଗୌତମଙ୍କ ଛଦ୍ମବେଶରେ ଇନ୍ଦ୍ର ଆସିଛନ୍ତି... । ଋଷିପତ୍ନୀ ପ୍ରବଞ୍ଚିତା ହୋଇଗଲେ ।

ଋଷିକର୍ତ୍ତୃକ ଅହଲ୍ୟା ଅଭିଶପ୍ତା, ଧରିତ୍ରୀ ଥରିଉଠିଲେ । ଅହଲ୍ୟା ପ୍ରସ୍ତର ଗହ୍ୱରରେ ଲୁକ୍କାୟିତା, ପାଷାଣୀ ।

ଏହି ଦୁଃଖଦ ପରିବେଶରେ ଗୌତମଙ୍କ ଆଶ୍ରମ ଛିନ୍ନଭିନ୍ନ ହୋଇଯାଇଛି । ବହୁବର୍ଷ ପରେ କାରୁଣିକ ରାମଚନ୍ଦ୍ର ସେହି ପରିତ୍ୟକ୍ତ ଆଶ୍ରମରେ ପଦନ୍ୟାସ କରିଛନ୍ତି । ଅହଲ୍ୟା ଶ୍ରୀରାମଙ୍କ ସ୍ପର୍ଶରେ ପବିତ୍ରୀକୃତ ହୋଇ ଶାଶ୍ୱତୀକନ୍ୟା ରୂପେ ବନ୍ଦିତା ହୋଇଛନ୍ତି । ମହର୍ଷି ଗୌତମ ତାଙ୍କୁ ପତ୍ନୀ ଭାବରେ ସାଦରେ ଗ୍ରହଣ କରିଛନ୍ତି ।

ଏହି ଅହଲ୍ୟା ଚରିତ୍ରଟି ଯେତିକି କରୁଣ ତତୋଽଧିକ ଭାବୋଦ୍ଦୀପକ । ଆଶା, ଏହି ପୁସ୍ତକଟି ବିଦଗ୍ଧ ପାଠକମାନଙ୍କ ଦ୍ୱାରା ଆଦୃତ ହେବ ।

---


## ବିଦ୍ୟାପୁରୀ

ବାଲୁବଜାର, କଟକ ୭୫୩୦୦୨

ISBN 81-7411-342-8